# ଜୀବନ ଓ ବନ୍ଧୁ ବନଜନ୍ତୁଙ୍କ

# ଭାବ-ଆଦାନ ପ୍ରଦାନ

୧୯୮୩ ବର୍ଷ ଭାବ-ଆଦାନ ପ୍ରଦାନ ବର୍ଷ ରୂପେ ପାଳନ କରାଯାଉଅଛି, ଯଦ୍ୱାରା ତମ ଭଳି କିଶୋର କିଶୋରୀଗଣ ନିଜ ନିଜ ଜୀବନରେ ଭାବ-ଆଦାନ ପ୍ରଦାନ'ର ମହତ୍ତ୍ୱ ବୁଝିପାରିବ। ହେଲେ, ଭାବ-ଆଦାନ ପ୍ରଦାନ କହିଲେ କଅଣ ବୁଝାଏ?

ଏହା ହେଉଛି ଖବର ଆଦାନ ପ୍ରଦାନ, ଯାହା ଫଳରେ ଜଣେ ଅନ୍ୟ ଜଣଙ୍କ ସହିତ ସମ୍ପର୍କ ସ୍ଥାପନ କରିପାରେ। ଠିକ୍ ସେଇକଥା ବର୍ତ୍ତମାନ ମଧ୍ୟ ଚାଲିଛି : ତମେ ଏହି ବିଷୟ ପଢୁଥିବା ବେଳେ, ଜୀବନ ଓ ବନ୍ଧୁ ତମ ସହିତ ଭାବ-ଆଦାନ ପ୍ରଦାନ କରୁଅଛନ୍ତି।

ଭାବ—ଯେତେ ଅଦ୍ଭୁତ ହେଉନା କାହିଁକି, ତା'ର





ଆଦାନ ପ୍ରଦାନ ବିନା ସୃଷ୍ଟି ତିଷ୍ଠି ପାରିବ ନାହିଁ, ଏଇଟା ନିଶ୍ଚିତ ସତ୍ୟ। ଏକ ନଗଣ୍ୟ ଜୀବାଣୁ ଠାରୁ ଆରମ୍ଭ କରି, ସବୁ ପ୍ରକାରର ଉଦ୍ଭିଦସୃଷ୍ଟି ଓ ପଶୁପକ୍ଷୀ, ଏପରିକି ସର୍ବୋଚ୍ଚ ଉନ୍ନତ ମନୁଷ୍ୟ ପ୍ରାଣୀ...ସମସ୍ତେ ଭାବ-ଆଦାନ ପ୍ରଦାନ କରନ୍ତି। ସେଥି ସକାଶେ ଶବ୍ଦ, ଠାର, ହାବଭାବ/ଇଙ୍ଗିତ, ଗନ୍ଧ, ସ୍ପର୍ଶ, ରଙ୍ଗ/ବର୍ଣ୍ଣ—ଏପରିକି ବିଜୁଳିଶକ୍ତି ମଧ୍ୟ ଉପଯୋଗ କରାଯାଇଥାଏ।

ଦେଖିବାକୁ ଗଲେ, ଏକ ବୟଃପ୍ରାପ୍ତ ପ୍ରାଣୀ ହୁଏତ ୧୫ ରୁ ୩୫ ଭାବରେ ନିଜକୁ ବ୍ୟକ୍ତ କରିପାରେ।

କେନ୍ଦ୍ରୀୟ ଆମେରିକାରେ ମିଳୁଥିବା ଚିତ୍କାରକାରୀ ବାନର (howling monkey)ର ନଅଟି ସ୍ୱତନ୍ତ୍ର ଚିତ୍କାର ଅଛି! ତନ୍ମଧ୍ୟରୁ ଗୋଟିଏ ଚିତ୍କାର ହେଉଛି, ତାଙ୍କ ଦଳକୁ କୌଣସି ପ୍ରକାରର ଅନଧିକ୍ରମଣ କିମ୍ବା ଆକ୍ରମଣ ସମ୍ପର୍କରେ ସୂଚନା। ଆଉ ଏକ ଚିତ୍କାର'ର ମାନେ ହେଉଛି, 'ଖାଦ୍ୟ ପାଇବା ପାଇଁ ଏହି ବାଟରେ ଆସ'। ଆଉ ଯଦି ଦଳ ମଧ୍ୟରୁ କୌଣସି ନର-ବାନର ଅସମ୍ମତି ଦର୍ଶାଏ, ତେବେ ଭୀଷଣ ଚିତ୍କାରଯୁକ୍ତ କଜିଆ ସୃଷ୍ଟି ହୋଇଥାଏ।

ପେଚାମାନେ ନିଜର ଥଣ୍ଟ ଠକ୍...ଠକ୍...କରି, ପକ୍ଷ ବାଡେଇ, ଏପରିକି ସଙ୍ଗୀତ ଧ୍ୱନିରେ ସଙ୍କେତ ଦିଅନ୍ତି। ପେଚକ ସଙ୍ଗୀତରେ, ଗମ୍ଭୀର ପେଚା-ରବ ଠାରୁ କାକଳି ପର୍ଯ୍ୟନ୍ତ, ଶିଟି ବଜେଇବା ଓ ଘଡ଼ଘଡ଼ ଶବ୍ଦ କାଢ଼ିବା ଇତ୍ୟାଦି ଧ୍ୱନି ସମାବିଷ୍ଟ ଥାଏ। ଏକ ଜାତୀୟ ବଂଶଲୁପ୍ତପ୍ରାୟ ଗାତଖୋଳା-ପେଚା (burrowing-owl) ର୍ୟାଟଲ୍ ସାପ (rattlesnake)ର ବିପଦ-ସଙ୍କେତ ସମାନ ସର୍ପଧ୍ୱନି କାଢ଼େ। କାଠ-ପେଚାମାନେ (wood owls) ପ୍ରେମ ନିଦର୍ଶନ ରୂପେ ମୁଣ୍ଡ ନୁଆଁନ୍ତି, ନାଚନ୍ତି ଓ ଡିଅଁନ୍ତି। ଆତ୍ମରକ୍ଷା ସକାଶେ, ସେମାନେ ନିଜର ପର ଫୁଲେଇ, ଡେଣା ଅଧା ମେଲେଇ, ତାଙ୍କ ଶରୀରକୁ ଆନ୍ଦୋଳିତ କରନ୍ତି ଆଉ ଥଣ୍ଟ ଠକ୍...ଠକ୍ କରନ୍ତି। କହିଲ ଦେଖି, ଏଭଳି ଲକ୍ଷ୍ମୀବାହନ ରୂପ ଦେଖିଲେ, କିଏ ବା ନ ଡରିବ?

ମହୁମାଛି'ର ନାଚ, ଅନ୍ୟ ମହୁମାଛିଙ୍କୁ ଖାଦ୍ୟ ମିଳୁଥିବା ନୂତନ ସ୍ଥାନ ସମ୍ପର୍କରେ ଜଣେଇଦିଏ। ଆଉ ଗୋଟିଏ ଉତ୍ତେଜିତ ନାଚ, ବଢ଼ିଆ ଖାଦ୍ୟ ମିଳୁଥିବା ସମ୍ପର୍କରେ ଆଗ୍ରହ ଦିଏ। ଲାଞ୍ଜ ହଲେଇ 'ଗୋଲ' ନାଚ ଦ୍ୱାରା ନିକଟରେ ଖାଦ୍ୟ ଥିବାର ସଙ୍କେତ ମିଳେ : ୧୦ ଥର ବୁଲିବାଟା ୧୦୦ ମିଟର ଦୂରତ୍ୱ'ର ସଙ୍କେତ, ୧ ଥର ବୁଲିବାଟା ୧୦,୦୦୦ ମିଟର ଦୂରତ୍ୱ'ର ସଙ୍କେତ। ଆଉ ଯଦି ଖାଦ୍ୟ ମିଳୁଥିବା ସ୍ଥାନ ସୂର୍ଯ୍ୟାଭିମୁଖୀ ଥାଏ, ତେବେ ମହୁମାଛି ଲାଞ୍ଜ ଉପରକୁ କରି ହଲେଇ ହଲେଇ ନାଚେ। କୋଉ ଦିଗକୁ ଉଡିବା ଉଚିତ, ସେକଥା ମହୁଫେଣା-ମୁହଁ'ର କୋଉ କୋଣକୁ ନର୍ତ୍ତକ ମହୁମାଛି'ର ଶରୀର ଅବସ୍ଥିତ, ସେଥିରୁ ଜଣାପଡେ। ସ୍କାଉଟ ବା ଅନ୍ୱେଷକ ମହୁମାଛିମାନେ ଏହି ନାଚ ଦ୍ୱାରା ନୂଆ-ବସା ସକାଶେ ଆବିଷ୍କୃତ ସ୍ଥାନ ସମ୍ପର୍କରେ ସମସ୍ତଙ୍କୁ ଜଣାନ୍ତି।





ହୁଏତ, ପଶୁପକ୍ଷୀମାନେ କଥାବାର୍ତ୍ତା ନ କରି ପାରନ୍ତି... କିନ୍ତୁ ସେମାନେ ବହୁତ କିଛି ବ୍ୟକ୍ତ କରିବାରେ ସଫଳ ହୁଅନ୍ତି ନିଶ୍ଚୟ।

# କାଶକୁ ଶୁଏଇଦିଏ ଗ୍ଲାଇକୋଡିନ






- ଆପଣଙ୍କ ମସ୍ତିଷ୍କ'ର କାଶ-କେନ୍ଦ୍ରକୁ ନିୟନ୍ତ୍ରଣ କରେ।
- ଆପଣଙ୍କ ଗଳା ଘଡଘଡ ହେବାଠାରୁ ଆରାମ ଆଣେ।
- ଆପଣଙ୍କ ଛାତି'ର ମାଂସ ସ୍ନାୟୁଙ୍କୁ ଆରାମ ଆଣେ।
- ଆପଣଙ୍କ ଫୁସଫୁସରେ ଜମିଥିବା ଶ୍ଳେଷ୍ମା ଦୂର କରେ।



**ଗ୍ଲାଇକୋଡିନ-**
**୪ ପ୍ରକାରେ କାର୍ଯ୍ୟକାରୀ**
**ନିର୍ଭରଯୋଗ୍ୟ**
**କାଶ-ଉପଶମକାରୀ।**

## ଶଯ୍ୟା ତ୍ୟାଗନ୍ତୁ, ଏଇ ନୂତନ ଆରାମ ନେଇ।

everest/83/ACW/307-or

LIKE TO FLY INTO THE EXCITING WORLD OF ADVENTURE AND HUMOUR?



DOLTON SUPER COMICS CAN TAKE YOU THERE EVERY FORTNIGHT!

IT COSTS ONLY Rs.2.00 A COPY— EVIDENTLY THE MOST EASILY AVAILABLE COMICS MAGAZINE YOU'VE EVER READ.

ITS 32 FULL COLOUR PAGES TAKE YOU THROUGH MYSTERY AND EXCITEMENT TO A RENDEZVOUS WITH THE SUPER HEROES —

SUPERMAN & BATMAN




DOLTON PUBLICATIONS
MADRAS 600 026

# ଚନ୍ଦ୍ରମାମୁଁ

ସଂସ୍ଥାପକ : 'ଚକ୍ରପାଣୀ'

ସଞ୍ଚାଳକ : ନାଗି ରେଡ୍ଡୀ

---

ଏ ସଂଖ୍ୟାର ବେତାଳ କାହାଣୀ ତାତ୍ପର୍ଯ୍ୟପୂର୍ଣ୍ଣ । ଅଧିକାଂଶ ଲୋକ ନିଜେ ପ୍ରତିଷ୍ଠା ପାଇଯିବା ପରେ ଅନ୍ୟ ପ୍ରତିଷ୍ଠାବାନ୍ ବ୍ୟକ୍ତିଙ୍କୁ ଯେତେ ସମ୍ମାନ ଦିଅନ୍ତି, ପ୍ରତିଷ୍ଠା ପାଇ ନଥିବା ପ୍ରତିଭାବାନ୍ ବ୍ୟକ୍ତିମାନଙ୍କୁ ସେ ସମ୍ମାନ ଦିଅନ୍ତି ନାହିଁ । ଯିଏ କୌଣସି ବିଶେଷ ଆସନରେ ରହିବ, ସେ ଉଦାର ଓ ନିରପେକ୍ଷ ଭାବରେ ସବୁ ବିଚାର କରିବା ଆବଶ୍ୟକ ।

## ଅମର ବାଣୀ

ଜାତସ୍ୟ ନଦୀତୀରେ ତସ୍ୟାପି ତୃଣସ୍ୟ ଜନ୍ମସାଫଲ୍ୟମ୍ ।
ଯତ୍ ସଲିଲମଜ୍ଜନାକୁଳଜନହସ୍ତାଲମ୍ବନମ୍ ଭବତି ॥

ନଦୀକୂଳରେ ବଢ଼ିଥିବା ଗୋଟିଏ ତୃଣର ଭୂମିକା ମଧ୍ୟ ସାର୍ଥକ ହୁଏ—ଯଦି ନଦୀରେ ବୁଡ଼ିଯାଉଥିବା ଲୋକଟିଏ ତାକୁ ଧରି ପକାଇ ବଞ୍ଚିଯାଏ ।

---

ବର୍ଷ : ୧୭    ଅଗଷ୍ଟ ୧୯୮୩    ଅଙ୍କ : ୨

ପ୍ରତିସଂଖ୍ୟା : ଟ ୧.୦୦ :: ବାର୍ଷିକ ମୂଲ୍ୟ : ଟ ୧୪.୦୦








# ହାର ଚୋରି

ରାତି ମାତ୍ର ପହରରେ ହୋଇଛି, ଖୁବ୍ ବର୍ଷା ଆରମ୍ଭ ହୋଇଗଲା । ଦାମୋଦର ତା' ଘରର କବାଟ ବନ୍ଦ କରି ଭିତରକୁ ଆସିଲେ । ଝିଆପିଆ ସହଳ ସହଳ ହୋଇଗଲା । ସ୍ତ୍ରୀ ଗାୟତ୍ରୀ ଜିନିଷପତ୍ର ରଖା ରଖି କରୁଥାଏ । ଦାମୋଦର ତା' ଟିକି ଝିଅ ଊର୍ମିଳାକୁ ନେଇ ଶୋଇବାକୁ ଗଲା ।

"ବାପା, ଗଳ୍ପ କୁହ । ନହେଲେ ଡର ଲାଗୁଛି ।" ବାହାରେ ଘଡ଼ଘଡ଼ି ଶୁଣି କାନରେ ଅଙ୍ଗୁଳି ଦେଇ ଝିଅ କହିଲା ।

"ଆରେ ଝିଅ, ମୁଁ ସବୁଦିନେ ଏତେ ଗଳ୍ପ କେଉଁଠୁ ଶିଖିବି ଯେ ତୋତେ କହିବି ?" ଦାମୋଦର କହିଲା ।

"ସତୁମାମୁଁ ଏତେ ଗଳ୍ପ କେମିତି ଶିଖିଲେ ?" ଊର୍ମିଳା ପଚାରିଲା ।

"ସତୁମାମୁଁ ଅନେକ ବହିପତ୍ର ପଢ଼େ । ମୋତେ ଏତେ ପଢ଼ିବାକୁ ବେଳ କାହିଁ ? ଶୋଇପଡ଼ । ସତୁମାମୁଁ ଆସିଲେ ଗପ କହିବ ।" ଦାମୋଦର କହିଲା ।

ସେତିକିବେଳେ ଦରଜାରେ କିଏ ଶବ୍ଦ କଲା । ଦାମୋଦର କବାଟ ଖୋଲି ଦେଖିଲା ଓଦା ହୋଇ ସତ୍ୟବ୍ରତ ଠିଆ ହୋଇଛି । ତା' ପଛରେ କେହି ଜଣେ ଅପରିଚିତ ବ୍ୟକ୍ତି ।

"ସତୁ ! ତୁ ଶହେ ବର୍ଷ ବଞ୍ଚିବୁ । ଊର୍ମିଳା ବର୍ତ୍ତମାନ ତୋତେ ଝୁରି ହେଉଥିଲା । ଗଳ୍ପ ନ ଶୁଣିଲେ ଶୋଇବ ନାହିଁ ବୋଲି କାନ୍ଦି କାନ୍ଦି ତତେହିଁ ମନେ କରୁଥିଲା ଓ ଗଳ୍ପ ପାଇଁ ଜିଦ୍‌ଧରି ବସିଥିଲା । କିନ୍ତୁ ଏ ବର୍ଷାରେ କୁଆଡ଼େ ?" ଦାମୋଦର ପଚାରିଲା ।

"ଯାଉଥିଲି ସହରକୁ । ବର୍ଷା ଯୋଗୁଁ

ବିମଳ ଗର୍ଗ



ପୁରୁଣା ବସ୍‌ର କଳ କବ୍‌ଜା ବିଗିଡ଼ି ଗଲା ଏଇ ପାଖ ବଜାର ଭିତରେ । ବସ୍ ଭିତରେ ସାରାରାତି କାହିଁକି ବସି ରହନ୍ତି ? ଚାଲିଆସିଲି । ମୋ ସାଙ୍ଗରେ ଇଏ ହେଲେ ଯଦୁ ବାବୁ । ଏହାଙ୍କ ଘର ସହରରେ ।"

"ଏଠିକୁ ଚାଲି ଆସିଲେ ଭଲ କଲେ ।" ଦାମୋଦର ଯଦୁ ବାବୁଙ୍କୁ ସଙ୍ଖୋଳି କହିଲେ ।

ଗାୟତ୍ରୀ ସଙ୍ଗେ ସଙ୍ଗେ କିଛି ଖାଦ୍ୟ ପ୍ରସ୍ତୁତ କଲେ । ସତ୍ୟବ୍ରତ ଦାମୋଦରର ସହପାଠୀ ଥିଲା । ଦୁହେଁ ଅତି ଘନିଷ୍ଠ ବନ୍ଧୁ । ଗାୟତ୍ରୀ ସତ୍ୟବ୍ରତକୁ ନିଜ ବଡ଼ ଭାଇ ଭଳି ଦେଖୁଥିଲେ । ଗାୟତ୍ରୀ ତତ୍‌କ୍ଷଣାତ୍ ଦୁଇ ଆଗନ୍ତୁକଙ୍କ ପାଇଁ ରନ୍ଧାବଢ଼ା କଲେ । ଖାଦ୍ୟ ପ୍ରସ୍ତୁତ ହେବା ପରେ ସେମାନଙ୍କୁ ଖାଇବା ଘରକୁ ଡକା ହେଲା । କିନ୍ତୁ ଊର୍ମିଳା ଆଉ ଶୋଇ ନଥାଏ, ସତୁମାମୁଁଠୁ ଗଳ୍ପ ଶୁଣିବ ବୋଲି ତାଙ୍କ ପିଛା ଧରିଥାଏ ।

ଦୁଇ ଆଗନ୍ତୁକ ଖିଆପିଆ କରି ସାରିବା ବେଳକୁ ଦାମୋଦର ଦାଣ୍ଡ ଘରେ ଦୁହିଙ୍କ ସକାଶେ ବିଛଣା କରି ଦେଇଥାନ୍ତି । ଊର୍ମିଳା ଗଳ୍ପ ଶୁଣିବ ବୋଲି ଜିଗର କରି ସତ୍ୟବ୍ରତଙ୍କ ପାଖରେ ଶୋଇଲା । ତେବେ ସତ୍ୟବ୍ରତ ଗଳ୍ପଟିଏ ଅଧା କହିବା ବେଳକୁ ସେ ନିଦରେ ଶୋଇପଡ଼ିଲା । ସତ୍ୟବ୍ରତ ମଧ୍ୟ ବହୁତ କ୍ଳାନ୍ତ ହୋଇପଡ଼ିଥିଲେ ଓ ସହଜ ଶୋଇ ପଡ଼ିଲେ ।

ସକାଳେ ସତ୍ୟବ୍ରତ ଉଠି ଦେଖନ୍ତି ଯଦୁ ବାବୁ ସହରକୁ ଯିବା ସକାଶେ ପ୍ରସ୍ତୁତ ହୋଇ ସାରିଲେଣି । ଊର୍ମିଳା ଉଠିଲେ ତାଙ୍କୁ ସହଜରେ ଛାଡ଼ିବ ନାହିଁ ଜାଣି ସତ୍ୟବ୍ରତ ମଧ୍ୟ ବିଳମ୍ବ ନକରି ଯଦୁ ବାବୁଙ୍କ ସହ ବାହାରି ଚାଲିଗଲେ ।

ସେ ଦୁହେଁ ବିଦାୟ ନେଇ ଚାଲିଯିବାର କିଛି ସମୟ ପରେ ଊର୍ମିଳା ଉଠିଲା । "ସତୁମାମୁଁ ଗଲେ କୁଆଡ଼େ ?" ସେ ଉତ୍କଣ୍ଠିତ ହୋଇ ପଚାରିଲା ।

"ଚିନ୍ତା କର ନା । ସତୁମାମୁଁ ଦୁଇଦିନ



ଉତ୍ସବରୁ ସହରରୁ ଫେରି ଏଇ ବାଟେ ଘରକୁ ଯିବେ। ତୋ ପାଇଁ ଖେଳଣା ନେଇ ଆସିବେ ବୋଲି କହି ଯାଇଛନ୍ତି। ସେ ଆସିଲେ ମନ ଇଚ୍ଛା ଗପ ଶୁଣିବୁ।" ଗାୟତ୍ରୀ ଏହା କହି କାମରେ ବ୍ୟସ୍ତ ରହିଲେ। କିଛି ସମୟ ପରେ ଝିଅକୁ ଗାଧୋଇଦେବା ନିମନ୍ତେ ବାଡ଼ ପଛ ପଟକୁ ନେଇଯାଇ ଝିଅ ଦେହକୁ ଚାହିଁ ଚମକି ପଡ଼ିଲେ। ଝିଅ ବେକରେ ଥିବା ସୁନାହାର ଗଲା କୁଆଡ଼େ? ଝିଅ ନିଜେ ବି କିଛି କହି ପାରିଲା ନାହିଁ।

ସେ ଘର ଭିତରକୁ ଆସି ତାଙ୍କ ସ୍ୱାମୀଙ୍କୁ ସୁନାହାର କଥା ପଚାରିଲେ। "କେଉଁଠି ପଡ଼ିଯାଇଥିବ" କହି ସେ ନିଜ ଖଟ ଉପରେ ଏବଂ ପରେ ଝିଅ ଯାଇ ସତ୍ୟବ୍ରତ ପାଖରେ ଶୋଇଥିବା ହେତୁ ତା' ଶେଯ ଖଣ୍ଡାଖଣ୍ଡି କଲେ। କିନ୍ତୁ ହାର ମିଳିଲା ନାହିଁ।

"ସବୁ ହୁଏତ ହାରଟି ପାଇ ନିଜ ପକେଟରେ ପୁରାଇଦେଇଛି। କିନ୍ତୁ ପରେ ଆମକୁ ଦେବାକୁ ଭୁଲିଯାଇଛି!" ଦାମୋଦର କହିଲେ। ଯାହାହେଉ, ଅପେକ୍ଷା କରିବା ଛଡ଼ା ସେ ବିଷୟରେ ଆଉ କିଛି କରିବାର ନଥିଲା।

ଦୁଇ ଦିନ ପରେ ସତ୍ୟବ୍ରତ ଆସି ସବୁ ଶୁଣିଲେ। ସେ ଟିକିଏ ଗମ୍ଭୀର ହୋଇ କହିଲେ, "ବୁଝିଲ, ଇଏ ସେଇ ଯଦୁରାୟର କାମ। ତା'ର ସେପରି ବଦଭ୍ୟାସ ଅଛି ବୋଲି ଆଗରୁ ମୁଁ ଶୁଣିଥିଲି କିନ୍ତୁ ବିଶ୍ୱାସ କରୁ ନଥିଲି। ଅନେକ ଲୋକ ଅଛନ୍ତି ବାହାରେ ବେଶ୍ ଭଦ୍ର ଓ ଭିତରେ ନାନା କୁପ୍ରବୃତ୍ତି ସବୁ ଥାଏ।"

"ଯଦୁରାୟ କ'ଣ ଚୋର?" ଦାମୋଦର ଆଶ୍ଚର୍ଯ୍ୟ ହୋଇ ପଚାରିଲେ।

"ତା' ସହ ମୋର ବିଶେଷ ପରିଚୟ ନାହିଁ। ତେବେ ଶୁଣାଶୁଣିରୁ ସନ୍ଦେହ ହେଉଥିଲା, ତା'ର ଚୋରି ଅଭ୍ୟାସ ଅଛି। ଝିଅ ବେକରେ ହାର ମୁଁ ବି ଦେଖିଥିଲି।



ସେ କୋଠରୀ ଭିତରକୁ ରାତିରେ ଆଉ କେହି ପଶି ନାହିଁ । ହାର ତେବେ ଯିବ କୁଆଡ଼େ ?" ସତ୍ୟବ୍ରତ କହିଲେ ।

"ଛାଡ଼ !" କହିଲେ ଦାମୋଦର ।

"ନା, ଏତେ ସହଜରେ ଛାଡ଼ିଦେଲେ ଚଳିବ ନାହିଁ । ହାର ଉଦ୍ଧାର କରିବା ନିମନ୍ତେ ଚେଷ୍ଟା କରାଯାଉ । ମିଳିଲେ ମିଳିବ ନ ମିଳିଲେ ନାହିଁ ।" ସତ୍ୟବ୍ରତ କହିଲେ ।

ଏହାପରେ ସତ୍ୟବ୍ରତ ଦାମୋଦରଙ୍କୁ ସଂଗରେ ଧରି ସହରକୁ ଗଲେ ଓ ହଠାତ୍ ଯାଇ ପହଞ୍ଚିଗଲେ ଯଦୁବାବୁ ଘରେ । ଏପରି ଅସମୟରେ ଓ ଅପ୍ରତ୍ୟାଶିତ ଭାବରେ ଏମାନେ ଦୁଇଜଣ ପହଞ୍ଚିବା ଦେଖି ଯଦୁବାବୁ ଟିକିଏ ଥତମତ ହେଲେ ଓ ଆଶ୍ଚର୍ଯ୍ୟ ହେଲେ ।

"ଆସନ୍ତୁ ଆସନ୍ତୁ ।" ଯଦୁବାବୁ ସ୍ୱାଗତ ଜଣାଇଲେ ।

ସତ୍ୟବ୍ରତ କହିଲେ, "ଦାମୋଦରର ଭଣୋଇ ଏଠାରେ ପୋଲିସ ବିଭାଗର ବଡ଼ କର୍ତ୍ତା । ତାଙ୍କଠି କାମ ଥିଲା ବୋଲି ଆସିଥିଲୁ । ଭାବିଲୁ, ଆପଣଙ୍କ ସହ ଦେଖା କରିଯିବା ।"

"ଭଲ କଲେ । ଭଣୋଇଙ୍କଠାରେ କ କାମ ଥିଲା ?" ଯଦୁବାବୁ ଟିକିଏ ଦୋ ଦୋ ଗାନ୍ତ ହୋଇ ପଚାରିଲେ ।

"କ'ଣ ଆଉ କହିବା ଭାଇ, ମୋ ଝିଅ ବେକରୁ କିଏ ସୁନାହାର ଚୋରାଇ ନେଇଛି । ସେଥିରେ ଶ୍ରୀକୃଷ୍ଣଙ୍କ ପ୍ରତିକୃତି ଥିବା ଲକେଟ ଥିଲା । ପୁଣି ଲକେଟ ପଛ ପଟରେ ଗୋଟାଏ ସ୍ୱସ୍ତିକ ଚିହ୍ନ ଥିଲା । ଭଣୋଇଙ୍କୁ ସବୁ କହିବାରୁ ସେ ହିମ୍ମତ ଦେଇ କହିଛନ୍ତି, ଚୋର ଜରୁର୍ ଧରା ପଡ଼ିଯିବ, ଦେଖାଯାଉ । ହଁ, ଗୋଟାଏ କଥା । ଚୋରି ଯିବା ଦିନ ଆମ ଘରକୁ ଯେଉଁମାନେ ଆସିଥିଲେ, ପୋଲିସ ସମସ୍ତଙ୍କ ନାମଧାମ ଟିପି ନେଇଛି । ହୁଏତ ସେମାନେ ଆପଣଙ୍କୁ ବି ପଚାରିବେ । ଆପଣ ବିରକ୍ତ ହେବେ ନାହିଁ ।" ଦାମୋଦର

କହିଲେ ।

ଯଦୁରାୟର ମୁହଁ ଶେତା ପଡ଼ିଗଲା । ସେତିକିବେଳେ ତା' ସ୍ତ୍ରୀ ଭିତରରେ ପଶି-ଆସି ଅଚିହ୍ନା ଲୋକଙ୍କୁ ଦେଖି ଅନ୍ୟ କୋଠରୀକୁ ଯଦୁରାୟକୁ ଡାକି ନେଇଗଲା ଓ ଯଦୁରାୟ କିଛି କହିବା ପୂର୍ବରୁ ଉତ୍ତେଜିତ କଣ୍ଠରେ କହିଲା, "ଝିଅ ବାଡ଼ିରେ ଖେଳୁ-ଥିଲା । କିନ୍ତୁ କାହିଁ ଦୁଇଘଣ୍ଟା ହେଲା ଦେଖା ନାହିଁ । ଅନ୍ୟ ପିଲାମାନେ କହୁଛନ୍ତି ଜଣେ ଦାଢ଼ିଆ ଲୋକ କଏ ତାକୁ କୁଆଡ଼େ କାଖ କରି ନେଇଗଲା । କଥା ହେଲା ତମେ ସେ ଦିନ ଯେଉଁ ସୁନାହାର ଆଣି ଦେଇଥିଲ, ଝିଅ ସେ ଖଣ୍ଡିକ ପିନ୍ଧିଥିଲା । ମୋର ସନ୍ଦେହ ସେ ହାର ହସ୍ତଗତ କରିବା ସକାଶେ କେହି ତାକୁ ଭୁଲାଇ ନେଇଯାଇଛି । ତମେ ବର୍ତ୍ତମାନ ଯାଇ ପୋଲିସରେ ଖବର ଦିଅ । କହିବ, ହାରରେ ଶ୍ରୀକୃଷ୍ଣଙ୍କ ଛବି ଥିବା ଲକେଟ ଅଛି ଓ ପଛ ପଟେ ସ୍ୱସ୍ତିକ ଚିହ୍ନ ଅଛି ।"

"ଚୁପ୍, ଚୁପ୍ !" ଯଦୁରାୟ ବିକଳ ଭାବରେ କହିବାର ଶୁଣାଗଲା ।

"କାହିଁକି ? ଏଥିରେ ଚୁପ୍ ହେବାର ଅଛି କ'ଣ ?" ତା ସ୍ତ୍ରୀ ଆଶ୍ଚର୍ଯ୍ୟ ହୋଇ ପଚାରିଲା ।

ଯଦୁରାୟ, ଦାମୋଦର ଓ ସତ୍ୟବ୍ରତ ବସିଥିବା କୋଠରୀ ଭିତରକୁ ପଳାଇ ଆସିଲେ ଓ କଣ୍ଠସ୍ୱର ନମ୍ର କରି କହିଲେ, "ଆଜ୍ଞା, ସବୁ ତ ବୁଝି ପାରୁଥିବେ । ଦଇବ ମୋତେ ଧରାଇ ଦେଲା । ଯଦି ଝିଅ ସତରେ ଚୋର ହାବୁଡ଼ରେ ପଡ଼ି ନଥିବ, ତେବେ ମୁଁ ହାର ଫେରାଇ ଦେବି । ମୋ ସ୍ତ୍ରୀ ଓ ଆପଣଙ୍କ ଭଉଣୀ ଯେପରି ନ ଜାଣନ୍ତି । କ୍ଷମା କରନ୍ତୁ ।" ତା ଆଖି ଛଳ ଛଳ ଦିଶିଲା ।

ଝିଅକୁ ଜଣେ ବନ୍ଧୁ ବାନ୍ଧବ ଲୋକ ନେଇଯାଇଥିଲେ । ଝିଅ ଫେରିଆସିବା ମାତ୍ରେ ଯଦୁରାୟ ତା ସ୍ତ୍ରୀକୁ କହିଲା, "ଦେଖ, ସେ ହାରଟି ବଦଳରେ···

"ମୁଁ ସବୁ ଶୁଣିଛି ।" କହି ସ୍ତ୍ରୀ ହାରଟି ଖୋଲି ଦାମୋଦରଙ୍କ ହାତରେ ଦେଇ ଦେଲା ।





[ ୨ ]

[ ପୂର୍ବକଥା : ଅବନ୍ତୀନଗରୀରେ ରହୁଥିଲେ ତିନି ଭାଇ । ଥରେ ସବା ସାନଭାଇ ପିଙ୍ଗଳ ମାଛ ଧରିବାକୁ ଯାଇ ଗୋଟାଏ ଅଜଣା ସରୋବର ପାଖରେ ପହଞ୍ଚିଲା । ସେଠାରେ ମଣ୍ଡନ ନାମକ ଜଣେ ଲୋକ ତାକୁ ଗୋଟାଏ ଅଦ୍ଭୁତ ଅନୁରୋଧ କଲା । ସେ ଅନୁରୋଧ ରକ୍ଷା କରି ପିଙ୍ଗଳ ସହରକୁ ଯାଇ ସେ ବାବଦରେ କାଞ୍ଚନ ମିଶ୍ର ନାମକ ବେପାରୀଠାରୁ ଶହେ ମୋହର ପାଇଲା । ତା'ପରେ— ]

କାଞ୍ଚନ ମିଶ୍ରଠାରୁ ନିଜର ପ୍ରାପ୍ୟ ନେଇସାରି ପିଙ୍ଗଳ ଖୁସି ମନରେ ଘର ମୁହାଁ ଫେରିଲା । ବାଟରେ ଯେଉଁ ଦୋକାନରୁ ସେ ଗତ ଦଶଦିନ ଧରି ବାକିରେ ସଉଦା ନେଉଥିଲା, ସେଠାକୁ ଯାଇ ଦୋକାନୀର ସମୁଦାୟ ପ୍ରାପ୍ୟ ପରିଶୋଧ କରିଦେଲା ।

"କହେ ପିଙ୍ଗଳ, ଆଜି କ'ଣ ତିମିମାଛ ଧରି ବିକ୍ରି କରିଛ ବୋଲି ମନେ ହେଉଛି!" ଦୋକାନୀ ଆଶ୍ଚର୍ଯ୍ୟ ହୋଇ କହିଲା ।

ପିଙ୍ଗଳ ତା'ର ଅଦ୍ଭୁତ ଅଭିଜ୍ଞତା କଥା କାହାକୁ ହେଲେ କହି ପକାଇବାକୁ ଭିତରେ ଭିତରେ ଛଟପଟ ହେଉଥିଲା । କିନ୍ତୁ ଲୋଭ




ସମ୍ବରଣ କରି ସେ କହିଲା, "ହଁ ଭାଇ, ଆଜି ବହୁତ ବଡ଼ ବଡ଼ ମାଛ ଜାଲରେ ପଡ଼ିଲେ । ବିକ୍ରି କରି ବେଶ୍ ଦୁଇପଇସା ରୋଜଗାର କରିଛି!"

ଏହାପରେ ଯଥେଷ୍ଟ ସଉଦାପତ୍ର ଧରି ସେ ଘରକୁ ଗଲା । ଦୁଇ ବଡ଼ ଭାଇ ବେକାର ବସିଥିଲେ ।

ପିଙ୍ଗଳ ମା ହାତରେ ସଉଦା ଦେଇ କହିଲା, "ମା, ଶୀଘ୍ର ରନ୍ଧାରନ୍ଧି କର । ଭୋକ ଲାଗିଲାଣି ।"

ମା ଯଥାଶୀଘ୍ର ରୋଷେଇ କଲେ । ତିନିଭାଇ ବସି ଖିଆପିଆ କଲେ । ଦୁଇ ବଡ଼ଭାଇ ଜୀବଦତ୍ତ ଓ ଲକ୍ଷଦତ୍ତ ଖାଇସାରି ବୁଲିବାକୁ ବାହାରି ଯାଆନ୍ତେ ପିଙ୍ଗଳ ମୋହରଥଳି ବାହାର କରି ମା'ଙ୍କ ହାତରେ ଦେଲା ।

ଆଶ୍ଚର୍ଯ୍ୟ ହୋଇ ମା ପଚାରିଲେ, "ପୁଅ, ଏତେ ମୋହର କେଉଁଠାରୁ ପାଇଲୁ?" ପିଙ୍ଗଳ ସବୁ କଥା ଜଣାଇଲା । ମା ଶୁଣି ସାରି ଗମ୍ଭୀର ଭାବରେ କହିଲେ, "ଯାହା କରିଛୁ କରିଛୁ । ଆଉ ଏଣିକି ସେ ସରୋବର ପାଖକୁ ଯିବା ଦରକାର ନାହିଁ ।"

"କାହିଁକି ମା, ଏଥିରେ ଡରିବାର ଅଛି କ'ଣ? ସେ ଲୋକ ତ ନିଜ ଇଚ୍ଛାରେ ସେଠାରେ ଡୁବି ମଲା! ତେବେ ଏକଥା କାହାକୁ ନ କହିଲେ ହେଲା ।" ପିଙ୍ଗଳ ମନ୍ତବ୍ୟ ଦେଲା ।

"ତୋ ଦୁଇ ବଡ଼ଭାଇଙ୍କ ସ୍ୱଭାବ ତୋତେ ଭଲ ଭାବରେ ମାଲୁମ ଅଛି । ସେମାନେ ଯେପରି ଏ ଘଟଣା ମୋଟେ ନ ଶୁଣନ୍ତି ।" ମା ବୁଝାଇଲେ ।

ଦଶଦିନ ପରେ ସେଦିନ ରାତିରେ ପିଙ୍ଗଳ ଭଲ ଭାବରେ ନିଦ୍ରାଗଲା । ପରଦିନ ସକାଳେ ଜାଲ ଧରି ସେ ସେହି ନିର୍ଜନ ସରୋବର କୂଳରେ ପହଞ୍ଚିଲା । କିନ୍ତୁ ଦୁଇପ୍ରହର ଯାଏ ଚେଷ୍ଟା କରି ମଧ୍ୟ ମାଛ ଧରିପାରିଲା ନାହିଁ । ସେ ଫେରିବାକୁ ଉଦ୍ୟତ ହେଉଛି, ଦୂରରୁ କେହି ଜଣେ ଘୋଡ଼ା ଛୁଟାଇ ତା' ଆଡ଼େ ଆସୁଥିବାର ଦେଖିଲା ।

ପିଙ୍ଗଳ ଚମକି ଉଠିଲା । କାରଣ ଘୋଡ଼-ସବାର୍ ମଣ୍ଡନ ଭଳି ଦିଶୁଥିଲା । ସେ ଭାବିଲା, ସରୋବରରେ ବୁଡ଼ି ମରିବା ପରେ ପ୍ରେତ ରୂପରେ ମଣ୍ଡନ ତା' ଆଡ଼େ ଆସୁଛି !




ଅଳ୍ପ ସମୟ ଭିତରେ ଘୋଡ଼ସବାର୍ ତା' ପାଖରେ ପହଞ୍ଚିଗଲା ଓ ହସି କହିଲା, "ପିଙ୍ଗଳ, ତମେ ମୋତେ ଗୋଟାଏ କାମରେ ସାହାଯ୍ୟ କର ।"

ପ୍ରଥମେ ଡରିଯାଇ ତା'ପରେ ପିଙ୍ଗଳ ଭଲ୍‌କରି ଦେଖି ବୁଝିଲା, ଏ ଲୋକ ଦେଖିବାକୁ ମଣ୍ଡନ ଭଳି ହେଲେ ବି ତା'ଠାରୁ ବୟସରେ ଟିକିଏ କମ୍ । ତା'ଛଡ଼ା ଏହାର ଘୋଡ଼ା ମଧ୍ୟ ଭିନ୍ନ ।

"ମୋ ନାମ ଆପଣ କିପରି ଜାଣିଲେ ? କି ପ୍ରକାର ସାହାଯ୍ୟ ଲୋଡ଼ୁଛନ୍ତି ?" ପିଙ୍ଗଳ ପଚାରିଲା ।

ଘୋଡ଼ସବାର ଉଚ୍ଚକଣ୍ଠରେ ହସିଲା ଓ କହିଲା, "ପିଙ୍ଗଳ ? ତମ ନାମ ମୁଁ କେମିତି ଜାଣିଲି, ସେକଥା ତମ ପାଖରୁ ଗୋପନ ନାହିଁ । ତମଠୁଁ କି ସାହାଯ୍ୟ ଚାହେଁ, ସେକଥା ବି ତମେ ଜାଣିଛ । ଶୁଣ । ମୋ ନାମ ଅନୁରୂପ । ଗତ କାଲି ଯାହାଙ୍କୁ ସାହାଯ୍ୟ କଲ, ସେ ମଣ୍ଡନ ମୋ ବଡ଼ ଭାଇ । ଆଜି ମୋତେ ସେହି ଏକାଭଳି ସାହାଯ୍ୟ କର ।"

"ମଣ୍ଡନ ତେବେ ତୁମ ଭାଇ ? ସେ କାହିଁ ?" ପିଙ୍ଗଳ ପଚାରିଲା ।

ଅନୁରୂପ ପୁଣି ପାଟି କରି ହସିଲା ଓ ସରୋବର ମଝିକୁ ଆଙ୍ଗୁଠି ଦେଖାଇ କହିଲା, "ମଣ୍ଡନ ସେଇଠି କେଉଁଠି ଥିବ ପରା ! ଆଜି ତା' ସାଙ୍ଗରେ ଆମର ଦେଖା ହେବ ନାହିଁ ।"

"ଓଃ, ତୁମେ ତେବେ ସତରେ ସବୁ ଜାଣ !" ପିଙ୍ଗଳ କହିଲା ।

"ହଁ, ସବୁ ଜାଣେ । ତମଠୁଁ ମୋର ଲୋଡ଼ା ଏକା ପ୍ରକାର ସାହାଯ୍ୟ ।"

"ବେଶ୍ । କିନ୍ତୁ ସର୍ତ୍ତ ହେଲା, ଏଥର ମୋତେ ଦୁଇଶହ ସୁନା ମୋହର ଦେବାକୁ ହେବ ।" ପିଙ୍ଗଳ କହିଲା ।

ଅନୁରୂପ ଅଟ୍ଟହାସ୍ୟ କରି କହିଲା, "ତମେ ଏହିପରି ସର୍ତ୍ତ ଦେବ ବୋଲି ପ୍ରଥମରୁ ମୁଁ




ଜାଣିଥିଲି। ସେଥିପାଇଁ ମୁଁ କାଞ୍ଚନ ମିଶ୍ରକୁ ନିର୍ଦ୍ଦେଶ ଦେଇ ଆସିଛି—ସେ ତୁମକୁ ଦୁଇଶହ ସୁନା ମୋହର ଦେବ। ତେବେ ମୁଁ ସରୋବରରୁ ଜୀବନ୍ତ ବାହାରି ଆସି ପାରିବି ନାହିଁ ବୋଲି ତମେ କାହିଁକି ଧରି ନେଉଛ? ମୋ ଅବସ୍ଥା ମଣ୍ଡନ ଭଳି ନହୋଇ ପାରେ।"

ଏହାପରେ ପିଙ୍ଗଳ ଦଉଡ଼ି ଦ୍ୱାରା ଅନୁରୂପର ହାତଗୋଡ଼ ବାନ୍ଧିଲା। ତାକୁ ସରୋବର ଭିତରକୁ ଫୋପାଡ଼ିବା ପୂର୍ବରୁ ଅନୁରୂପ କହିଲା, "ପିଙ୍ଗଳ, ମନେ ରଖିଥିବ—ମୋ ମୁଣ୍ଡ ଜଳ ଉପରକୁ ଦେଖାଗଲେ ସଙ୍ଗେ ସଙ୍ଗେ ଜାଲ ପକାଇ ମୋତେ ପାଣିରୁ ବାହାର କରି ଆଣିବ। ଯଦି ମୋ ଗୋଡ଼ ଦୁଇଟି ଦେଖାଯିବ, ତେବେ ତମେ ଯଥାଶୀଘ୍ର ଯାଇ କାଞ୍ଚନ ମିଶ୍ରଠାରୁ ତମ ପ୍ରାପ୍ୟ ଆଦାୟ କରିନେବ।"

ପିଙ୍ଗଳ ଅନୁରୂପକୁ ପାଣି ଭିତରକୁ ଫୋପାଡ଼ି ଦେଇ ଜାଲ ଧରି ଅପେକ୍ଷା କଲା। କିଛି ସମୟ ଉତ୍ତାରୁ ପାଣି ଉପରକୁ ବୁଦ୍‌ବୁଦମାନ ଉଠିଲା ଓ ଅନୁରୂପର ପାଦ ଦୁଇଟି ଦେଖାଗଲା।

"ହତଭାଗା ମଲା!" ପିଙ୍ଗଳ ଏହା କହି ଅନୁରୂପର ଘୋଡ଼ା ଚଢ଼ି ବସିଲା ଓ ଆଉ ପଛକୁ ନ ଅନାଇ ସିଧା ସହରର ଆଡ଼େ ଚଳିଲା। ତାକୁ ଦେଖିବା ମାତ୍ରେ କାଞ୍ଚନ ମିଶ୍ର କହି ପକାଇଲା, "ହାୟରେ ଲୋଭ!" ତେବେ ସେ ସଙ୍ଗେ ସଙ୍ଗେ ପିଙ୍ଗଳ ହାତକୁ ଦୁଇଶହ ମୋହର ବଢ଼ାଇ ଦେଲା।

"ତମେ କାହା ଲୋଭ କଥା କହୁଛ? ତମେ ଜାଣ ମୋତେ ଦୁହେଁଯାକ ଯାହା କରିବାକୁ ଅନୁରୋଧ କଲେ ମୁଁ ତାହାହିଁ କରିଛି ମାତ୍ର। ତେଣୁ ମୋର ଦୋଷ କେଉଁଠି? ମୁଁ ବରଂ ବିପଦରେ ପଡ଼ିବାର ସମ୍ଭାବନା ଥିବା ସତ୍ତ୍ୱେ ସେମାନଙ୍କ କହିବା ମତେ ସେମାନଙ୍କୁ ସାହାଯ୍ୟ କରିଛି। ମୁଁ ପରିଶ୍ରମ କରି ଯାହା ଉପାର୍ଜନ କଲି, ସେଥିରେ ଲୋଭ କେଉଁଠି ରହିଲା?" ପିଙ୍ଗଳ ଟିକିଏ ଗରମ୍ ହୋଇ ଜେରା କଲା।

କାଞ୍ଚନ ମିଶ୍ର ମୁଣ୍ଡ ହଲାଇ କହିଲା, "ମୁଁ ସେ ମୃତ୍ୟୁ ମୁହଁକୁ ଡେଇଁ ପଡ଼ିଥିବା ଦୁଇ ଭାଇଙ୍କ ଲୋଭ କଥା କହୁଛି। ତେବେ ତମ

ଭିତରେ ବି ଲୋଭ ଦେଖା ଦେଇନାହିଁ, ସେକଥା କହିପାରିବ କି? କାଲି ଶହେ ମୋହର ପାଇଥିଲ । ଆଜି ଦୁଇଶହ ପାଇଁ ମନ ବଳାଇଲ । ଏହା ଲୋଭ ନୁହେଁ । ଆଉ ତମେ ଯାହା କରୁଛ ତାହା ପ୍ରଘଟ ହୋଇଗଲେ ତମ ଅବସ୍ଥା କ'ଣ ହେବ ଭାବି ପାରୁଛଟି?"

"ଶୁଣ । ଆଗାମୀ କାଲି ମୁଁ ତିନିଶହ ମୋହର ଦାବୀ କରିବି । ନହେଲେ ମୁଁ ଏଭଳି କାମ କରିବାକୁ ରାଜି ହେବି କାହିଁକି?" ଏହା କହି ପିଙ୍ଗଳ ତା' ଘର ଆଡ଼େ ଚାଲିଲା ।

ପୂର୍ବଦିନ ଭଳି ଏଥର ବି ମା'ଙ୍କୁ ଟଙ୍କା ଧରାଇ ଦେବାରୁ ମା କହିଲେ, "ପୁଅ, ମୋତେ ଭୟ ଲାଗୁଛି । ତୁ ଆଉ ସେ ସରୋବର ପାଖକୁ ଯାଆ ନା ।"

"ମା, ଭୟ କରୁଛ କାହିଁକି? ଯେ କୌଣସି ଲାଭଜନକ କାମରେ ବିପଦର ଭୟ ଥାଏ । ସେଥିରେ କ'ଣ ଅଛି? ମୁଁ ପୁଣି ଆହୁରି ଅଧିକ ଉପାର୍ଜନ କରି ଫେରିବି । କେହି କିଛି ନ ଜାଣିଲେ ଗଲା!" ପିଙ୍ଗଳ କହିଲା ।

ପରଦିନ ସକାଳେ ବି ପିଙ୍ଗଳ ସେ ସରୋବର ଆଡ଼େ ବାହାରିଗଲା । ସରୋବର ଭିତରକୁ ସେ ଜାଲ ପକାଉଥାଏ ସତ, କିନ୍ତୁ ତା' ଆଖି ପ୍ରାନ୍ତର ଆଡ଼େ ରହିଥାଏ ।

ଦୁଇପହର ବେଳକୁ ସେ ଦୂରରେ ଧୂଳି ଉଡୁଥିବାର ଦେଖିଲା । ଚାହିଁ ଚାହିଁ ଜଣେ




ଘୋଡ଼ସବାର୍ ଆସି ସେଠାରେ ପହଞ୍ଚିଗଲା ଓ କହିଲା, "ପିଙ୍ଗଳ, ମୋ ନାମ ହେଉଛି ପଦ୍ମପାଦ । ମୋତେ ଗୋଟାଏ କାମରେ ସାହାଯ୍ୟ କର ।"

"ସାହାଯ୍ୟ ଅବଶ୍ୟ କରିବି । ଏ ସରୋବରରେ ପ୍ରାଣ ହାରିବାକୁ ଆସୁଥିବା ଲୋକଙ୍କୁ ସେ ଦିଗରେ ସାହାଯ୍ୟ କରିବା ହେଲା ମୋ କାମ । ତେବେ ମୋତେ ମୋ ପରିଶ୍ରମ ପାଇଁ ତିନିଶହ ମୋହର ଦେବାକୁ ପଡ଼ିବ ।" ପିଙ୍ଗଳ କହିଲା ।

"ଇଏ ଏମିତି ବିଶେଷ ବଡ଼ କଥା କ'ଣ? ମୁଁ ମରିଗଲେ କାଞ୍ଚନ ମିଶ୍ର ତମକୁ ତମ ପାରିଶ୍ରମିକ ଦେଇଦେବ । ସେ ବ୍ୟବସ୍ଥା ମୁଁ

କରି ଆସିଛୁ । ହୁଏତ ତମ ଅବସ୍ଥା ଖୁବ ବଦଳିଯିବ!" ଏହା କହି ହସି ହସି ପଦ୍ମପାଦ ଘୋଡ଼ାରୁ ଦଉଡ଼ି ଖୋଲି ପିଙ୍ଗଳ ହାତରେ ଦେଲା ।

ପିଙ୍ଗଳ ସେ ଦଉଡ଼ିରେ ତା' ହାତଗୋଡ଼ ବାନ୍ଧିଲା ଓ ତାକୁ ଟେକି ନେଇ ସରୋବର ଭିତରକୁ ଫୋପାଡ଼ିଦେଲା ।

"ବିଚରା ମଲା!" ଏହା କହି ସେ ଘୋଡ଼ା ପାଖକୁ ଅଗ୍ରସର ହେଲା । ସେ ସରୋବର ଭିତରକୁ ଅନାଇବା ଆବଶ୍ୟକ ମନେ କଲା ନାହିଁ ।

କିନ୍ତୁ ସରୋବର ଆଡ଼ୁ ଶୁଭିଲା, "ପିଙ୍ଗଳ! ଇଏ କ'ଣ? ଶୀଘ୍ର ଜାଲ ପକାଇ ମୋତେ ଉଦ୍ଧାର କର!"

ପିଙ୍ଗଳ ଘୋଡ଼ାରେ ବସି ଯାଇଥିଲା । ତଳକୁ କୁଦିପଡ଼ି ସେ ସଙ୍ଗେ ସଙ୍ଗେ ଜାଲ ପକାଇ ପଦ୍ମପାଦକୁ କୂଳକୁ ଉଠାଇ ଆଣିଲା ।

ପଦ୍ମପାଦ ଜୋରେ ଜୋରେ ନିଃଶ୍ୱାସ ନେଉଥାଏ । ହାତରେ ଧରିଥାଏ ଦୁଇଟି କୁମ୍ଭୀର ବଛା ।

ପିଙ୍ଗଳ ସେ କୁମ୍ଭୀର ବଛା ବଷ୍ୟୁରେ କଛି ପଗୁରିବାକୁ ଉଦ୍ୟତ ହେବା ବେଳକୁ ପଦ୍ମପାଦ ଯାଇ ତା' ଘୋଡ଼ା ପାଖରେ ପହଞ୍ଚିଲା । ଗୋଟାଏ ଥଳି ଭିତରେ ଥିବା ପାତ୍ରରେ ଦୁଇ କୁମ୍ଭୀର ବଛାଙ୍କୁ ଭର୍ତ୍ତି କରି ପାତ୍ରର ମୁହଁ ବନ୍ଦ କରିଦେଲା ।

ପିଙ୍ଗଳ ପଦ୍ମପାଦ ଆଡ଼େ ବିସ୍ମୟ ଭରା ଆଖିରେ ଥରେ ଅନାଇ କହିଲା, "ପଦ୍ମପାଦ,



ତମେ ବଡ଼ ଭାଗ୍ୟବାନ । ନହେଲେ କି ବଞ୍ଚିଥାନ୍ତ? ଆଚ୍ଛା, ମୋ ପାରିଶ୍ରମିକ ପ୍ରାପ୍ତ ତିନିଶହ ମୋହର ଏବେ ମୋତେ କିପରି ମିଳିବ?"

ପଦ୍ମପାଦ ପିଙ୍ଗଳକୁ ଆନନ୍ଦରେ କୁଣ୍ଢାଇ ପକାଇ କହିଲା, "ପିଙ୍ଗଳ, ତିନିଶହ କାହିଁକି, ତମକୁ ତିନି ହଜାର ବା ତିନିଲକ୍ଷ ମୋହର ଦେବାକୁ ମୋର ଆପତ୍ତି ନାହିଁ । ତୁମକୁ ମୁଲକରେ ସବୁଠାରୁ ଧନୀ ବନାଇ ଦେଇ ପାରେଁ । କିନ୍ତୁ ମୋ ସହ ତୁମକୁ ଭଲ୍ଲୁକ ପର୍ବତକୁ ଯିବାକୁ ପଡ଼ିବ ।"

"ଭଲ୍ଲୁକ ପର୍ବତ! ବାପ୍‌ରେ! ମୋ ମା ଓ ଅନ୍ୟ ବୁଢ଼ୁଣୀ ଲୋକଙ୍କଠାରୁ ସେ ପର୍ବତ ବିଷୟରେ କେତେ କଥା ଶୁଣିଛି । ମୋତେ ତ ସେ ନାମ ଶୁଣି ବହୁତ ଡର ଲାଗୁଛି । ସେ ପର୍ବତ ପରା ପ୍ରେତ ପିଶାଚଙ୍କ ବାସ ସ୍ଥଳୀ?" ପିଙ୍ଗଳ ସନ୍ଦିଗ୍ଧ କଣ୍ଠରେ ପଚାରିଲା ।

"ପ୍ରେତ ପିଶାଚ ତୁମର କ'ଣ କ୍ଷତି କରି ପାରିବେ? ଏ ପୃଥିବୀରେ ତିନିଜଣ ବଡ଼ ତାନ୍ତ୍ରିକ ଥିଲେ । ସେଥିରୁ ଦୁଇଜଣକୁ ତମେ ନିଜେ ସଲିଳ ସମାଧି ଦେଇଛ । ତୃତୀୟ ଜଣକ ମୁଁ ନିଜେ । ବୁଝିଲ?" ପଦ୍ମପାଦ କହିଲା ।

"ମୁଁ ଠିକ୍ ବୁଝିପାରୁ ନାହିଁ ।" ପିଙ୍ଗଳ ଆଶ୍ଚର୍ଯ୍ୟ ହୋଇ କହିଲା ।

ପଦ୍ମପାଦ କହିଲା, "ମୁଁ ଯେତେବେଳେ ତମଠୁଁ ସାହାଯ୍ୟ ଆଶା କରୁଛି, ସେତେ-



ବେଳେ ସବୁ କଥା ତମକୁ କହିଦେବା ଉଚିତ । ଶୁଣ ।"

ଏହାପରେ ସେ କହିଲା : ଆମେ ତିନିଭାଇ । ଆମ ବାପା ଜଣେ ମହା ତାନ୍ତ୍ରିକ ଥିଲେ । ତନ୍ତ୍ର ବିଦ୍ୟା ପ୍ରୟୋଗ କରି ସେ ଅନେକଙ୍କର ଯେପରି ହିତ କରିଥିଲେ, ସେହିପରି କେତେକଙ୍କର ଅହିତ ବି କରିଥିଲେ । କ୍ରମେ ସେ ବୃଦ୍ଧ ହେଲେ । ଆମ ତିନିଭାଇଙ୍କୁ ସେ ଅନେକ ବିଦ୍ୟା ଶିଖାଇଲେ । କାହାପ୍ରତି ପକ୍ଷପାତ କରୁ ନଥିଲେ । କିନ୍ତୁ ନିଜର ସବୁଠାରୁ ଗୋପନ ତନ୍ତ୍ର ବିଦ୍ୟାମାନ ସେ ଯେଉଁ ଖାତାରେ ଲେଖି ରଖିଥିଲେ, ସେ ବହି କାହାକୁ ନ ଦେଇ ଖାଲି ଏତିକି କହିଲେ କି ଆମ ଭିତରେ ଯିଏ ଶକ୍ତିଶାଳୀ ହେବ ସିଏ ସେ ଖାତାଟି ପାଇବ ।

ବାପାଙ୍କ ମୃତ୍ୟୁ ପରେ ଆମେ ତିନିଭାଇ ପରସ୍ପର ଝଗଡ଼ା କରିବାକୁ ଲାଗିଲୁଁ । ଖାତାଟି ଆୟତ୍ତ କରିବା ନିମନ୍ତେ ଆମେ ମନ୍ତ୍ରତନ୍ତ୍ର ଦ୍ୱାରା ପରସ୍ପରର ହାନି କରିବାକୁ ଚେଷ୍ଟା କଲୁଁ ।

ଯେତେବେଳେ ଆମେ ନିଜ ନିଜର ସର୍ବନାଶ କରିବାକୁ ଉଦ୍ୟତ, ସେତେବେଳେ ଆମ ବାପାଙ୍କ ତନ୍ତ୍ରଗୁରୁ ଆସି ଆମ ଘରେ ଅତିଥି ହେଲେ । ଆମ୍ଭମାନଙ୍କ ଆଚରଣ ତାଙ୍କୁ ବହୁତ ଦୁଃଖ ଦେଲା । ତିନିଜଣଙ୍କୁ ବସାଇ ସେ କହିଲେ, "ତମେମାନେ ସେ ଖାତା ବିଷୟରେ କିଛି ଜାଣ ନାହିଁ । ତମ ଭିତରୁ ଯିଏ ବେଶି ଶକ୍ତିଶାଳୀ ହେବ ସିଏ ସେ ଖାତାର ଅଧିକାରୀ ହେବ ବୋଲି ସେ କହିଥିଲେଟି ? ସେ ଖାତାରେ ଲେଖାଥିବା ତନ୍ତ୍ର ବିଦ୍ୟା ଆୟତ୍ତ କରିବାକୁ ହେଲେ ପୂର୍ବରୁ ଅନ୍ୟାନ୍ୟ ଅନେକ ପ୍ରକାରେ ନିଜକୁ ପ୍ରସ୍ତୁତ କରିବାକୁ ପଡ଼ିବ । କିପରି ପ୍ରସ୍ତୁତ ହେବାକୁ ପଡ଼ିବ, ସେ ସୂତ୍ର ବତାଇଦେବା ନିମନ୍ତେ ଆମ୍ଭେମାନେ ଗୁରୁଙ୍କୁ ଅନୁରୋଧ କଲୁଁ ।

(କ୍ରମଶଃ)






# ଦୁଇ ମହାନ୍ କବି

ନିଶା ଗରଜୁଥାଏ । ତୁହାକୁ ତୁହା ବର୍ଷା ହେଉଥାଏ । ବାରମ୍ବାର ବଜ୍ରଧ୍ୱନି ମଧ୍ୟରେ ଶୁଭୁଥାଏ ଶ୍ୱାନଶ୍ୱାପଦଙ୍କ ରଡ଼ ତଥା ଅଶରୀରୀମାନଙ୍କ ଅଟ୍ଟହାସ୍ୟ । ବିଜୁଳି ଝଲକରେ ଦିଶିଯାଉଥାଏ ଭୟାବହ ମୁହଁଟିମାନ ।

କିନ୍ତୁ ରାଜା ବିକ୍ରମ ତିଳେ ମଧ୍ୟ ବିଚଳିତ ବୋଧ ନକରି ପୁନର୍ବାର ବୃକ୍ଷଟି ପାଖକୁ ଲେଉଟି ଆସିଲେ ଏବଂ ବୃକ୍ଷାରୋହଣ କରି ଶବଟିକୁ ଉତାରି ଆଣିଲେ । ତା'ପରେ ତାକୁ କାନ୍ଧରେ ପକାଇ ଶୁନ୍‌ଶାନ୍ ଶ୍ମଶାନ ପଥ ଅତିକ୍ରମ କରିବାକୁ ଆରମ୍ଭ କରିବା ମାତ୍ରେ ଶବସ୍ଥିତ ବେତାଳ କହିଲା, "ରାଜା ! ତୁମେ ଯେଭଳି ସାହସ ଓ ଶ୍ରମର ପରାକାଷ୍ଠା ଦେଖାଉଛ, ତାହା ପ୍ରଶଂସନୀୟ । କିନ୍ତୁ ଅଧିକାଂଶ ରାଜାଙ୍କ ଭିତରେ ଏଭଳି ଗୁଣମାନ ନଥାଏ । ସେମାନେ ନାନାବିଧ ଛଳନାପୂର୍ଣ୍ଣ



ମାର୍ଗରେ ଜନସାଧାରଣଙ୍କର ପ୍ରଶଂସା ପାଇବା ଦିଗରେ ଚେଷ୍ଟା କରିଥାନ୍ତି । କେହି କେହି ନିଜେ କାବ୍ୟ କବିତା ରଚୁ ନଥିଲେ ମଧ୍ୟ ଦରବାରରେ କବିମାନଙ୍କୁ ପୋଷଣ କରି କାବ୍ୟକଳାର ସମଝଦାର୍ ବୋଲାନ୍ତି । ଫଳରେ ମାମୁଲି କବି ମଧ୍ୟ ମହାକବି ରୂପେ ସ୍ୱୀକୃତି ପାଇଥାନ୍ତି । ଦୃଷ୍ଟାନ୍ତ ସ୍ୱରୂପ ମୁଁ ରାଜା ଜୟବର୍ମାଙ୍କ କାହାଣୀ କହୁଛି । ଶୁଣ । ଶୁଣିଲେ ଶ୍ରମଭାର ଲାଘବ ମନେ ହେବ ।"

ବେତାଳ କହିଲା : ମାଳବ ରାଜା ଜୟବର୍ମାଙ୍କ ଦରବାରରେ ସବୁଦିନେ କିଛି ନା କିଛି ସାଂସ୍କୃତିକ କାର୍ଯ୍ୟକ୍ରମ ହେଉଥାଏ । ଦିନେ ଦୂରରୁ ଆସିଥିବା ଜଣେ କବିଙ୍କ ଆବୃତ୍ତିରେ ରାଜା ମୁଗ୍ଧ ହୋଇ ତାଙ୍କୁ କହିଲେ, "ଆପଣଙ୍କ ଭଳି ଗୁଣୀ କବି ମୁଁ ଆଜି ପର୍ଯ୍ୟନ୍ତ ଭେଟି ନାହିଁ । ଆପଣ ମୋ ଦରବାରରେ ରାଜକବି ରୂପେ ରହନ୍ତୁ ।"

କବି କହିଲେ, "ମହାରାଜ, ଆପଣ ଗୁଣଗ୍ରାହୀ ବୋଲି ଏପରି କହୁଛନ୍ତି । କିନ୍ତୁ ମୁଁ ଏମିତି ବଡ଼ କବି କି'ଣ ? ମୋ ଗୁରୁ ଗଙ୍ଗେଶ୍ୱର ଓ ତାଙ୍କ ମିତ୍ର ଚନ୍ଦ୍ରଦେବଙ୍କ କବିତା ଯଦି ଶୁଣନ୍ତେ, ତେବେ ଆପଣ ନିଶ୍ଚୟ ଅଭିଭୂତ ହୋଇ ଯାଆନ୍ତେ । ଆପଣ ମୋତେ ଦରବାରର କବି ରୂପେ ନିଯୁକ୍ତ କରିବା ପ୍ରସ୍ତାବ ଦେଇ ସମ୍ମାନିତ କରିଛନ୍ତି । କିନ୍ତୁ ଅନେକ କାରଣରୁ ମୁଁ ମୋ ବାସଭୂମି ଛାଡି ଏଠାକୁ ଚାଲି ଆସିବା ସମ୍ଭବପର ହେବ ନାହିଁ । ଗଙ୍ଗେଶ୍ୱର ଓ ଚନ୍ଦ୍ରଦେବ ନିଜ ନିଜ ପ୍ରେରଣା ଦ୍ୱାରା କବିତା ଲେଖନ୍ତି, ରାଜାନୁଗ୍ରହ ପାଇଁ ନୁହେଁ । ତଥାପି ସେମାନଙ୍କ ଅବସ୍ଥା ସ୍ୱଚ୍ଛଳ ନୁହେଁ । ତେଣୁ ସେମାନେ ଆପଣଙ୍କ ପ୍ରସ୍ତାବ ସାଦରେ ଗ୍ରହଣ କରିବାର ସମ୍ଭାବନା ରହିଛି ।"

ରାଜା ତହିଁ ପରଦିନ ସ୍ୱତନ୍ତ୍ର ବାର୍ତ୍ତାବହ ପଠାଇ ଉଭୟ ଗଙ୍ଗେଶ୍ୱର ଓ ଚନ୍ଦ୍ରଦେବଙ୍କୁ ନିମନ୍ତ୍ରଣ କରି ପଠାଇଲେ । ଦୁହେଁ ଆସି ରାଜାଙ୍କ ଦୁଇ ଅତିଥି ଭବନରେ ରହିଲେ ।

ରାଜା ସେମାନଙ୍କର ଯଥାବିଧି ଚର୍ଚ୍ଚା ସକାଶେ ବ୍ୟବସ୍ଥା କରିଦେଲେ ଓ ଅଲଗା ଅଲଗା ସମୟରେ ନିଜେ ଦୁଇ କବିଙ୍କ ପାଖକୁ



ଯାଇ ଏକାନ୍ତରେ କବିତା ଶୁଣିଲେ । ଶୁଣି ସେ ଅତ୍ୟନ୍ତ ମୁଗ୍ଧ ହେଲେ । ଦୁଇଜଣଯାକଙ୍କ କବିତା ତାଙ୍କୁ ଅପୂର୍ବ ଲାଗିଲା । ଦୁଇଜଣଙ୍କ ଭିତରେ ବଡ଼ କବି କିଏ, ତାହା ଜାଣିବା ନିମନ୍ତେ କୌତୁହଳ ଜନ୍ମିଲା ।

ରାଜା ତାଙ୍କ ଦରବାରର ବିଦ୍ୱାନ୍‌ମାନଙ୍କୁ ଦୁଇ କବିଙ୍କର କିଛି କିଛି କବିତା ପଢ଼ିବାକୁ ଦେଇ କିଏ ବଡ଼ କବି ତାହା ଠଉରାଇବାକୁ ନିର୍ଦ୍ଦେଶ ଦେଲେ । କିନ୍ତୁ ବିଦ୍ୱାନମାନେ କହିଲେ, "ମହିମା, କ୍ଷମା କରନ୍ତୁ । ଆପଣଙ୍କ ପ୍ରଶ୍ନର ଉତ୍ତର ଦେବା ଆମ ପକ୍ଷରେ ସମ୍ଭବପର ହେବ ନାହିଁ । ଦୁହେଁ ବଡ଼ ।"

ରାଜା ମନ୍ତ୍ରୀଙ୍କୁ କହିଲେ, "ଏ ତ ବଡ଼ ଅଦ୍ଭୁତ ପରିସ୍ଥିତି! ଦୁଇଜଣଙ୍କ ଭିତରୁ କିଏ ବଡ଼ ସେକଥା ତେବେ କିପରି ଜାଣିବା? ନ ଜାଣିଲେ ମୁଁ ଶାନ୍ତି ପାଇବି ନାହିଁ ।"

"ମହାରାଜ, ଦୁଇଜଣଯାକ ଅସାଧାରଣ କବି । ଏ ଦୁହିଁଙ୍କଠାରୁ ବଡ଼ କବି ବା ସାହିତ୍ୟ-ରସିକ ଆମ ଜାଣିବାରେ କେହି ନାହିଁ । ଆପଣଙ୍କ ପ୍ରଶ୍ନର ଉତ୍ତର ସେହି-ମାନେହିଁ ଦେଲେ ଦେଇ ପାରିବେ ।" ମନ୍ତ୍ରୀ କହିଲେ ।

ରାଜା ଜୟବର୍ମାଙ୍କ ମନରେ ମନ୍ତ୍ରୀଙ୍କ କଥା ରେଖାପାତ କଲା । ସେ ଗଙ୍ଗେଶ୍ୱରଙ୍କ ଲେଖା ଏକ ଗୁଚ୍ଛ କବିତା ନେଇ ଚନ୍ଦ୍ରଦେବଙ୍କୁ ଦେଖାଇ ନିଜ ସମସ୍ୟା ନିଷ୍କପଟରେ କହିଲେ ଓ ସେ କବିତା ଗୁଚ୍ଛ ଉପରେ ତାଙ୍କ ନିରପେକ୍ଷ ମତ ଦେବାକୁ ଅନୁରୋଧ କଲେ ।

ଚନ୍ଦ୍ରଦେବ କବିତାତକ ପଢ଼ି କହିଲେ, "ମହାରାଜ! ଏ କବିତାଗୁଚ୍ଛ ଅତୁଳନୀୟ । ଗଙ୍ଗେଶ୍ୱର ମୋ ତୁଳନାରେ ବଡ଼ କବି ।"

ରାଜା ଚନ୍ଦ୍ରଦେବଙ୍କ ମନ୍ତବ୍ୟ ଶୁଣି ଆଶ୍ଚର୍ଯ୍ୟ ହେଲେ । ସେ ଚନ୍ଦ୍ରଦେବଙ୍କର ଏକ ଗୁଚ୍ଛ କବିତା ନେଇ ଗଙ୍ଗେଶ୍ୱରଙ୍କୁ ପଢ଼ାଇ ତାଙ୍କ ମତ ପଚାରିଲେ । ଗଙ୍ଗେଶ୍ୱର କହିଲେ, "ମହାରାଜ, ଦେବୀ ସରସ୍ୱତୀଙ୍କ ବରପୁତ୍ର ନହେଲେ ଏଭଳି କବିତା ଲେଖିବା ସମ୍ଭବପର ନୁହେଁ । ଚନ୍ଦ୍ରଦେବ ଢେର୍ ବଡ଼ କବି!"

ରାଜା ପୁଣି ଆଶ୍ଚର୍ଯ୍ୟ ହେଲେ ଓ କହିଲେ, "ଅଚ୍ଛା, ମୁଁ ତ ଚନ୍ଦ୍ରଦେବଙ୍କ ମନ୍ତବ୍ୟ ଶୁଣି ଭାବିଥିଲି ଆପଣହିଁ ଶ୍ରେଷ୍ଠ କବି!"

"ନା, ମହାରାଜ, ଚନ୍ଦ୍ରଦେବହିଁ ଶ୍ରେଷ୍ଠ କବି।" ଗଙ୍ଗେଶ୍ୱର କହିଲେ।

ରାଜା ସନ୍ଧ୍ୟାବେଳେ ମନ୍ତ୍ରୀଙ୍କୁ କହିଲେ, "ଦେଖୁଛି ଦୁଇଜଣଙ୍କ ଭିତରେ କିଏ ବଡ଼ ସେକଥା କେବେ ବି ଠଉରାଇ ହେବ ନାହିଁ। ତାହାକୁ କେମିତି ସ୍ଥିରକୃତ କରିବା?"

"ମହାରାଜ, କବି ହିସାବରେ ଦୁହେଁ ବଡ଼। ଜନପ୍ରିୟତାରେ ବି ଏକ ଆରେକକୁ ବଳି। ତଥାପି ମଣିଷ ହିସାବରେ ଜଣକ ପାଖରେ ଅନ୍ୟ ଜଣକ ତୁଳନାରେ ଅଧିକ ଭଲ ଗୁଣ ଥିବା ସ୍ୱାଭାବିକ। ଆପଣ ଏଥର ଦୁଇଜଣଙ୍କୁ ପରସ୍ପରର କବିତା ଦେଖାନ୍ତୁ, କିନ୍ତୁ କାହାର କବିତା ସେକଥା କହନ୍ତୁ ନାହିଁ। ଦେଖାଯାଉ।"

ରାଜାଙ୍କ ମନକୁ ଏକଥା ପାଇଲା। ସେ ଚନ୍ଦ୍ରଦେବଙ୍କର ଆଉ କିଛି ନୂଆ କବିତା ଧରି ଗଙ୍ଗେଶ୍ୱରଙ୍କ ପାଖକୁ ଗଲେ ଓ କହିଲେ, "ଦେଖିଲେ, ଏ ଗୁଡ଼ିକ ମୋ ଦରବାରର ଜଣେ ତରୁଣ କବିଙ୍କର ଲେଖା। ଏହାହିଁ ତା'ର ପ୍ରଥମ ପ୍ରଚେଷ୍ଟା। ଆପଣ ଯଦି କହିବେ, ତା' ଭିତରେ କବି ପ୍ରତିଭା ଅଛି, ତେବେ ମୁଁ ତା'ର ପୃଷ୍ଠପୋଷକତା କରିବି।"

ଗଙ୍ଗେଶ୍ୱର କବିତାତକ ଓଲଟାଇଗଲେ ଓ କହିଲେ, "ମହାରାଜ, ଏ ଗୁଡ଼ିକ ମାମୁଲି ରଚନା। ମୁଗ୍ଧ ହେଲା ଭଳି କୌଣସି ଗୁଣ ମୁଁ ଏଥିରେ ଦେଖୁନାହିଁ।"



ରାଜା ତାଙ୍କୁ ଧନ୍ୟବାଦ ଦେଇ ଫେରି ଆସିଲେ । ପରଦିନ ସେ ଗଙ୍ଗେଶ୍ୱରଙ୍କର କିଛି ନୂଆ କବିତା ଧରି ଚନ୍ଦ୍ରଦେବଙ୍କ ପାଖକୁ ଗଲେ ଓ ସେସବୁ ଜଣେ ନୂତନ କବିଙ୍କର ଲେଖା ବୋଲି କହି ସେସବୁ ଉପରେ ତାଙ୍କର ମତାମତ ଲୋଡ଼ିଲେ ।

ଚନ୍ଦ୍ରଦେବ କବିତାଗୁଡ଼ିକ ମନଦେଇ ପଢ଼ି କହିଲେ, "ମହାରାଜ! ସତ କଥା କହିଲେ, ଯିଏ ପ୍ରଥମରୁ ଏଭଳି କବିତା ଲେଖି ପାରୁଛି, ସିଏ ଯେ ଭବିଷ୍ୟତରେ ମହାକବି ହେବ, ଏଥିରେ ସନ୍ଦେହ ନାହିଁ । ଏସବୁ ମୋର ବା ଗଙ୍ଗେଶ୍ୱରଙ୍କ କବିତାର ସମକକ୍ଷ । ଅଥଚ ଆମେ ଦୁହେଁ କେତେ ବର୍ଷ ଧରି ସାହିତ୍ୟ ସାଧନା କଲୁଣି !" ରାଜା ତାଙ୍କୁ ଧନ୍ୟବାଦ ଦେଇ ଫେରି ଆସିଲେ ଓ ମନ୍ତ୍ରୀଙ୍କୁ ସବୁ କଥା ଶୁଣାଇ ଶେଷରେ କହିଲେ, "ମନ୍ତ୍ରୀବର! ଏଥର ପ୍ରମାଣ ହୋଇଗଲା ଯେ ଗଙ୍ଗେଶ୍ୱରହିଁ ବଡ଼ କବି । କାରଣ ସେ ଚନ୍ଦ୍ରଦେବଙ୍କ କବିତାକୁ ତୁଚ୍ଛ କରିଦେଇ ପାରିଲେ ।"

"ନା ମହାରାଜ, କବି ହିସାବରେ ଉଭୟ ଗଙ୍ଗେଶ୍ୱର ଏବଂ ଚନ୍ଦ୍ରଦେବ ଯେ ପରସ୍ପର ସମକକ୍ଷ, ଏକଥା ତ ପ୍ରମାଣ ହୋଇ ସାରିଛି । ଆମେ ମଣିଷ ହିସାବରେ ଏବେ ଉଭୟଙ୍କୁ ତାହାର ବିଚାର କରୁଥିଲୁଁ । ଯେଉଁ ଚନ୍ଦ୍ରଦେବଙ୍କ କବିତାକୁ ଗଙ୍ଗେଶ୍ୱର ପୂର୍ବରୁ ଏତେ ମୂଲ୍ୟ ଦେଉଥିଲେ, ସେହି ଚନ୍ଦ୍ରଦେବଙ୍କ କବିତାକୁ ଜଣେ ନୂଆ କବିର କବିତା ବୋଲି ଭାବି ସେ ମନଦେଇ ନପଢ଼ି ହେୟଜ୍ଞାନ କଲେ । ଏହା



ତାଙ୍କ ଦାୟିତ୍ୱହୀନତାର ଲକ୍ଷଣ । ଏହା ଦ୍ୱାରା ସେ ଯେ ଜଣେ ପ୍ରତିଭାବାନ କବିର ଭବିଷ୍ୟତ ନଷ୍ଟ କରୁଥିଲେ, ସେକଥା ଭାବିଲେ ନାହିଁ । ଅପର ପକ୍ଷରେ ଚନ୍ଦ୍ରଦେବ ପ୍ରକୃତ ପ୍ରତିଭାର ପୂଜକ ବୋଲି ପ୍ରମାଣିତ ହେଲା । ସେ କବିର ଯଶ ଯୋଗୁଁ ନୁହେଁ, କବିତାର ମୂଲ୍ୟ ଯୋଗୁଁ କବିତାର ଆଦର କରିବା ଲୋକ । ଅତଏବ ସେ ମହାନ୍ କବି ତଥା ଉତ୍ତମ ମଣିଷ ।" ମନ୍ତ୍ରୀ ମନ୍ତବ୍ୟ ଦେଲେ । ରାଜା ମନ୍ତ୍ରୀଙ୍କ ସିଦ୍ଧାନ୍ତ ମାନିନେଲେ ଓ ଚନ୍ଦ୍ରଦେବଙ୍କୁ ବିପୁଳ ଅଭିନନ୍ଦନ ଜଣାଇ ରାଜକବି ଭାବରେ ବରଣ କଲେ ।

ବେତାଳ ଟିକିଏ ଚୁପ୍ ରହି ପ୍ରଶ୍ନ କଲା, "ରାଜା! ଗୋଟାଏ ବିଷୟରେ ମୋର ସନ୍ଦେହ ହେଉଛି । ଯଦି ଉଭୟ କବି ମହତ୍ ବୋଲି ପ୍ରମାଣ ହେଲା, ତେବେ ଯେ କୌଣସି ଜଣଙ୍କୁ ରାଜକବି କଲେ ଚଳିଥାନ୍ତା । ଉଭୟଙ୍କ ଭିତରେ ଭଲ ମଣିଷ କିଏ, ସେକଥା ବିଚାର କରିବା ଦରକାର କ'ଣ ଥିଲା? ପାରିଲେ ମୋ ପ୍ରଶ୍ନର ଉତ୍ତର ଦିଅ । ଉତ୍ତର ଦେବାର ଜାଣି ଥିବା ସତ୍ତ୍ୱେ ଯଦି ନୀରବ ରହିବ, ତେବେ ତମ ଶିର ହେବ ସ୍କନ୍ଧଚ୍ୟୁତ ।"

ମୁହୂର୍ତ୍ତେ ମଧ୍ୟ ବିଳମ୍ବ ନକରି ରାଜା ଉତ୍ତର ଦେଲେ, "ଯିଏ ରାଜକବି ଆସନରେ ବସିବ, ସେ ଖାଲି ନିଜେ ବଡ଼ କବି ହେଲେ ଚଳିବ ନାହିଁ । ସେ ରାଜ୍ୟର ଅନ୍ୟ ଗୁଣୀ କବିମାନଙ୍କୁ ଚିହ୍ନିବା ଆବଶ୍ୟକ । କାରଣ ତାହାର ବିଚାର ଉପରେ ଅନ୍ୟମାନେ ରାଜାଙ୍କଠାରୁ ପୃଷ୍ଠପୋଷକତା ପାଇବେ ବା ନ ପାଇବେ ତାହା ନିର୍ଭର କରୁଛି । ସେ ଭଲ ମଣିଷ ହୋଇ ନଥିଲେ ଉପରଠାଉରିଆ ଭାବରେ ବା ସ୍ୱାର୍ଥ ବା ଇର୍ଷା ପରବଶ ହୋଇ ପ୍ରକୃତ ଗୁଣୀଙ୍କୁ ହତାଦର କରିପାରେ!"

ରାଜାଙ୍କ ମୌନ ଭଙ୍ଗ ହେବା ମାତ୍ରେ ଶବ ସହ ଶବସ୍ଥିତ ବେତାଳ ତାଙ୍କ କାନ୍ଧରୁ ଖସିଯାଇ ପୁନର୍ବାର ବୃକ୍ଷଡାଳରେ ଝୁଲି ପଡ଼ିଲା । (କଳ୍ପିତ)





# କମ୍ବଳର ମୂଲ୍ୟ!

ଚନ୍ଦଧରପୁର ଗୋଟାଏ ବଡ଼ ଗାଁ । ପାଖରେ ବଜାର । ଗାଁ ଓ ବଜାର ଭିତରେ ଲାଲୁର ଦୋକାନ । ସେ ପୁରୁଣା ଜିନିଷପତ୍ର ବେଚାକିଣା କରେ ।

ଦିନେ ଭଗୁଦାସ କାଖରେ ଖଣ୍ଡିଏ କମ୍ବଳ ଜାକି ଦୋକାନ ଭିତରେ ପଶି ଲାଲୁକୁ ପଚାରିଲା, "ନୂଆ କମ୍ବଳର ଦାମ କେତେ?"

"ନୂଆ କମ୍ବଳରେ ମୋର କ'ଣ ଅଛି? ମୁଁ କେବଳ ପୁରୁଣା ଜିନିଷ ବିକ୍ରି କରେ, ଏକଥା କ'ଣ ତମେ ଜାଣନା?" ଲାଲୁ ପଚାରିଲା ।

"ହଁ, ଜାଣେ । ତେବେ ଯିଏ ପୁରୁଣା ଜିନିଷ ବିକ୍ରି କରେ, ସିଏ କ'ଣ ଆଉ ନୂଆ ଜିନିଷର ଦାମ ଜାଣି ନଥିବ?" ଭଗୁଦାସ ପଚାରିଲା ।

"ହଁ ଭାଇ, ଜାଣେ, ଜାଣେ । ନୂଆ କମ୍ବଳର ଦାମ ଆଜିକାଲି କୋଡ଼ିଏ ଟଙ୍କା ହେବ । ମୁଁ ପୁରୁଣା ଜିନିଷ ଏକ ଚତୁର୍ଥାଂଶ ଦାମ ଦେଇ କିଣେ । ଯେତିକି ଦାମରେ କିଣେ, ସେ ଦାମ ଉପରେ ମାତ୍ର ଏକଚତୁର୍ଥାଂଶ ଲାଭ ରଖି ବିକ୍ରି କରେଁ ।" ଲାଲୁ କହିଲା ।

"ତା'ର ମାନେ ଏ କମ୍ବଳ ଖଣ୍ଡିକର ଦାମ ମାତ୍ର ପାଞ୍ଚଟଙ୍କା ହେବ ବୋଲି କହୁଛ?" ଭଗୁଦାସ ଟିକିଏ ଆଶ୍ଚର୍ଯ୍ୟ ହୋଇ ପଚାରିଲା ।

"ଦେଖେଁ—ତମ ଜିନିଷ କିପରି!" ଲାଲୁ ଏହା କହି କମ୍ବଳ ଉପରେ ଆଖି ପକାଇଲା ଓ କହିଲା, "ଆରେ ଭାଇ, ଏହାର ତ ରଙ୍ଗ ବଲ୍‌ଭୁଲ୍ ଉଡ଼ି ଗଲାଣି । ଏହାର ଦାମ ତିନି ଟଙ୍କାରୁ ବେଶି ହେବ ନାହିଁ ।"

"ମାତ୍ର ତିନିଟଙ୍କା? ଠିକ୍ କହୁଛ? ଆଉ ଥରେ ଭାବିଚିନ୍ତି କୁହ ।" ଭଗୁଦାସ କହିଲା ।

ସୁରେନ୍ଦ୍ର

"ଯାଦୁମନ୍ତ୍ର କରିବ? ଦେଖିବା, କମ୍ବଳଟି ଖୋଲିକରି ଦେଖାଯାଉ!" ଲାଲୁ କମ୍ବଳ ଖୋଲିଲା ଓ ସଙ୍ଗେ ସଙ୍ଗେ କହିଲା, "ଆରେ, ଏହାର ତ ଅବସ୍ଥା ଧଗଡ଼ା ଧକଡ଼ା। ଦୁଇ ଟଙ୍କାରୁ ବେଶି ଦାମ ଇଆପାଇଁ କିଏ ଦେବ?"

ଭଗୁଦାସ ନିଜ ପକେଟରୁ ଅଢ଼େଇ ଟଙ୍କା ବାହାର କରି ଲାଲୁକୁ ଯାଚିଲା। ଆଶ୍ଚର୍ଯ୍ୟ ହୋଇ ଲାଲୁ ପଚାରିଲା, "ଇଏ କ'ଣ? ମୋତେ କାହିଁକି ଟଙ୍କା ଦେଉଛ? ଟଙ୍କା ତ ମୁଁ ତମକୁ ଦେବା କଥା!"

"ଲାଲୁ! ଏ କମ୍ବଳ ତୁମରି ଦୋକାନର ବାରନ୍ଦାରେ ଟଙ୍ଗା ହୋଇଥିଲା। ଖୋଲି ନେଇ ଆସିଲି। ତମେ ଏହାର ମୂଲ୍ୟ ନିରୂପଣ କଲ ଦୁଇଟଙ୍କା। ତମେ ଯେତିକି ଦାମରେ ଜିନିଷ କିଣ, ତାହା ଉପରେ ଏକଚତୁର୍ଥାଂଶ ଲାଭ ରଖ ବୋଲି କହିଲ। ତେଣୁ ଅଢ଼େଇ ଟଙ୍କା ନିଅ।" ଭଗୁଦାସ କହିଲା।

"କିନ୍ତୁ ଏ କମ୍ବଳ ଦେହରେ ଦାମ ଲେଖା ହୋଇ ଯେଉଁ କାଗଜ ମରା ହୋଇଥିଲା ତାହା ଗଲା କୁଆଡ଼େ?" ଲାଲୁ ପଚାରିଲା।

"ସେ ଖଣ୍ଡିକ ଖସି ପଡ଼ିଥିଲା। ମୁଁ ମୋ ଥଳିରେ ରଖିଛି।" ଏହା କହି ଭଗୁଦାସ କାଗଜ ଖଣ୍ଡିକ ବାହାର କଲା। ସେଥିରେ ଦାମ ଲେଖାଥିଲା ଦଶଟଙ୍କା।"

"ଏହାର ମୂଲ୍ୟ ତ ଲେଖା ଅଛି!" ଲାଲୁ ଥତମତ ହୋଇ କହିଲା।

"ସେକଥା ମୁଁ ଜାଣେନା। ତମେ ଯାହା ଦାମ ଠିକ୍ କରିଛ, ତାହାରି ଉପରେ ତମ ଲାଭ ଦେଇ ମୁଁ ନେବି।" ଭଗୁଦାସ କହିଲା।

ସେଠାରେ ଉପସ୍ଥିତ ଅନ୍ୟାନ୍ୟ ଗରାଖମାନେ ଭଗୁଦାସକୁ ସମର୍ଥନ କଲେ। ଲାଲୁ ଅଗତ୍ୟା କହିଲା, "ହଉ, ହେଲା। ତମେ ଶୀଘ୍ର ଏଠାରୁ ଗଲ!"

ଅଢ଼େଇ ଟଙ୍କା ଦେଇ କମ୍ବଳ ଧରି ଭଗୁଦାସ ଚାଲିଗଲା।





# ତୀର୍ଥଯାତ୍ରାର ଫଳ

ବୋଲପୁର ଗ୍ରାମରେ ଗଗନ ଓ ନିତ୍ୟାନନ୍ଦ ନାମରେ ଦୁଇଜଣ ଧନୀଗୃହୀ ରହୁଥା'ନ୍ତି । ଜମି କିଣିବା ସମ୍ପର୍କରେ ଦୁଇଜଣଙ୍କ ମଧ୍ୟରେ ମନୋମାଳିନ୍ୟ ଘଟିଥାଏ । ଦୁଇଜଣଙ୍କର ଅନେକ ଗୁଡ଼ିଏ ଅନୁଚର ଥା'ନ୍ତି । ସେମାନଙ୍କ ଭିତରେ ମଧ୍ୟ ଛୋଟ ଛୋଟ କଥା ନେଇ ମଝିରେ ମଝିରେ ଝଗଡ଼ା ଲାଗିଯାଉଥାଏ । ଗ୍ରାମରେ ଦୁଇପକ୍ଷ ସର୍ବଦା କଳିକଜିଆରେ ବ୍ୟସ୍ତ ରହିଲେ । ସେହି ଗ୍ରାମର ସୀମାନ୍ତରେ ଥିବା ନଦୀକୂଳରେ ରହୁଥା'ନ୍ତି ଜଣେ ସାଧୁ । ଏମାନଙ୍କର ବାଦ-ବିବାଦର ଖବର ତାଙ୍କ ପାଖରେ ବରାବର ପହଞ୍ଚୁଥାଏ । ଦୁଇଦଳର ଲୋକ ଭିନ୍ନ ଭିନ୍ନ ସମୟରେ ଯାଇ ସାଧୁଙ୍କୁ ଅନ୍ୟଦଳ ବିରୁଦ୍ଧରେ କହୁଥା'ନ୍ତି । ସାଧୁଙ୍କ ଆଶ୍ରମର ବାତାବରଣ ମଧ୍ୟ ସେମାନଙ୍କ ବାଦବିବାଦରେ ନଷ୍ଟ ହେଲା ।

ଶେଷରେ ସାଧୁ ଗୋଟିଏ ନିର୍ଦ୍ଦିଷ୍ଟ ଦିନ ଧାର୍ଯ୍ୟ କରି ଦୁଇ ଦଳଙ୍କୁ ଡ଼କାଇ ଅନେକ ବୁଝାଇଲେ । କିନ୍ତୁ କୌଣସି ଫଳ ହେଲାନାହିଁ । ବିବାଦ ଲାଗି ରହିଲା ।

ଥରେ ଗଗନ ଚାହିଁଲା ତା'ର ଅନୁଚରମାନଙ୍କୁ ନେଇ ତୀର୍ଥ ପର୍ଯ୍ୟଟନରେ ଯିବ । ତା'ପରେ ସେ ସାଧୁଙ୍କ ପାଖକୁ ଯାଇ କହିଲା, "ସାଧୁ ମହାରାଜ, ଆପଣ ଆପଣଙ୍କ ଶିଷ୍ୟବର୍ଗଙ୍କୁ ନେଇ ଆମ ସହିତ ଆସିଲେ ଖୁବ୍ ଭଲ ହୁଅନ୍ତା ।"

"ତୀର୍ଥଯାତ୍ରା ପାଇଁ ମୋର କୌଣସି ଆଗ୍ରହ ନାହିଁ । ତମେମାନେ ଯାଅ ।" ସାଧୁ କହିଲେ ।

ଗଗନ କହିଲା, "ସାଧୁବାବା, ଆପଣ ବୋଧହୁଏ ଖର୍ଚ୍ଚ ପାଇଁ ଚିନ୍ତା କରୁଛନ୍ତି । ଆପଣ ଚାଲନ୍ତୁ ସବୁ ଖର୍ଚ୍ଚ ମୁଁ ତୁଲାଇବି ।"

ଆଶାଲତା



ସାଧୁ ଅଳ୍ପ ହସି କହିଲେ, "ତୁମର ଶ୍ରଦ୍ଧା ଓ ଭକ୍ତି ଦେଖି ମୋ ମନ ବଡ଼ ଆନନ୍ଦ ହୋଇଛି। କିନ୍ତୁ ତୀର୍ଥଯାତ୍ରାରେ ଯେ କୌଣସି ବିଶେଷ ମୂଲ୍ୟ ଅଛି ସେ କଥା ମୁଁ ବିଶ୍ୱାସ କରେ ନାହିଁ।"

ଏ ପ୍ରକାର ଉତ୍ତର ସାଧୁଙ୍କ ମୁହଁରୁ ଶୁଣି ଗଗନ କହିଲା, "ଆପଣ ତ ସର୍ବଜ୍ଞ, ଆପଣଙ୍କୁ ବା ମୁଁ କ'ଣ ଅଧିକା କହିବି? କିନ୍ତୁ ଆପଣ କ'ଣ ସ୍ଥିରନିଶ୍ଚିତ ଯେ ତୀର୍ଥଯାତ୍ରାର କିଛି ମୂଲ୍ୟ ନାହିଁ?"

ମୁହୂର୍ତ୍ତେ ମାତ୍ର ବିଳମ୍ବ ନକରି ସାଧୁ କହିଲେ, "ତୁମେ ସବୁ ତୀର୍ଥ ବୁଲି ଫେରିଆସ ମୁଁ ସବୁ ବୁଝାଇ ଦେବି। କିନ୍ତୁ ତମେ ମୋ ପାଇଁ ଗୋଟିଏ କାମ କରିଦେବ।" ଏକଥା କହି ସାଧୁ ଭିତରକୁ ଯାଇ ଗୋଟିଏ ପୁଟୁଳି ନେଇ ଆସି ଗଗନକୁ ଦେଇ କହିଲେ, "ଏ ପୁଟୁଳିଟି ତୁମ ସହିତ ସବୁବେଳେ ରଖିଥିବ। ଯେଉଁଠି ସ୍ନାନ କରିବ ଏଇଟିକୁ ମଧ୍ୟ ସେଠାରେ ଥରେ ବୁଡ଼ାଇ ଆଣିବ। ତମେ ଫେରି ଆସି ମୋତେ ପୁଟୁଳିଟିକୁ ପୁଣି ଫେରାଇଦେବ।"

ଗଗନ ପୁଟୁଳିଟି ନେଇ ଚାଲିଗଲା। ଏ ଘଟଣାର ଘଣ୍ଟାଏ ପରେ ନିତ୍ୟାନନ୍ଦ ଆସି ସାଧୁଙ୍କ ପାଖରେ ପହଞ୍ଚି କହିଲା, "ସାଧୁବାବା ମୁଁ ମୋର ଅନୁଚରବର୍ଗଙ୍କୁ ନେଇ ଉତ୍ତର-ଭାରତକୁ ତୀର୍ଥଯାତ୍ରା କରି ହିମାଳୟ ଯିବି। ମୁଁ ଚାହେଁ ଯଦି ଆପଣ ଦୟାକରି ଆପଣଙ୍କ ଶିଷ୍ୟବର୍ଗଙ୍କ ସହିତ ମୋ ସହିତ ତୀର୍ଥ ପର୍ଯ୍ୟଟନ କରିବାକୁ ଯିବେ ତେବେ ମୁଁ ନିଜକୁ ଭାଗ୍ୟବାନ୍ ମନେ କରିବି।"

"ତୁମେ କହିବା ପୂର୍ବରୁ ଗଗନ ମଧ୍ୟ ଠିକ୍ ଏଇ କଥା ମୋତେ କହିଗଲା। କିନ୍ତୁ ମୋ ମତରେ ତୀର୍ଥଯାତ୍ରା ଦ୍ୱାରା ପ୍ରକୃତରେ ବିଶେଷ କିଛି ଫଳ ହୁଏ ନାହିଁ।" ସାଧୁ କହିଲେ।

ସାଧୁଙ୍କ ଉତ୍ତରରେ ନିତ୍ୟାନନ୍ଦ ଅତ୍ୟନ୍ତ ଆଶ୍ଚର୍ଯ୍ୟ ହେଲା ଓ କହିଲା, "ସାଧୁଜୀ ପରେ ସେକଥା। କିନ୍ତୁ କହନ୍ତୁ ଗଗନ ବି ତ ତୀର୍ଥ-ଯାତ୍ରାକୁ ଗଲା। ମୁଁ ତା'ଠାରୁ ଅଧିକ ଦୂର ଦୂର ସ୍ଥାନକୁ ଯିବି। କିନ୍ତୁ ମୁଁ ତା'ଠାରୁ କେଉଁ ଗୁଣରେ କମ୍? ଆପଣ କୃପାକରି ଆମମାନଙ୍କ ସହିତ ରହି ଆମକୁ ଆଶୀର୍ବାଦ ଦିଅନ୍ତୁ।"

"ତମେ ବହୁତ ଶ୍ରଦ୍ଧାଭକ୍ତି ସହିତ ମୋତେ ଡାକୁଛ, ତୁମକୁ ନିରାଶ କରିବା ଯୋଗୁ ମୁଁ ମଧ୍ୟ ଦୁଃଖିତ। ଦେଖ ତମେ ମୋ ପାଇଁ ଗୋଟିଏ କାର୍ଯ୍ୟ କର। ମୁଁ ତ ଯାଇ ପାରୁନି। ମୋ ବଦଳରେ ପୁତୁଳାଟିଏ ମୁଁ ଦେଉଛି ସେଇଟି ସାଥିରେ ଦେଇଯାଅ। ସବୁ ତୀର୍ଥ ବୁଲାଇ ଆଣି ପୁଣି ସେଇଟି ମୋତେ ଫେରାଇ ଦେବ।" ସାଧୁ କହିଲେ।

"ଯାହା ଆପଣଙ୍କର ଇଚ୍ଛା।" କହିଲା ନିତ୍ୟାନନ୍ଦ ଓ ସାଧୁ ଦେଇଥିବା ପୁତୁଳାଟି ହାତରେ ଧରି ଚାଲିଗଲା।

ଗଗନ ଓ ନିତ୍ୟାନନ୍ଦ ଦୁହେଁ ତୀର୍ଥଯାତ୍ରା କରିବାକୁ ଗଲେ। ଛମାସ ପରେ ଦୁହେଁ ଫେରିଆସି ଦୁଇପୁତୁଳା ସାଧୁଙ୍କୁ ଫେରାଇ ଦେଲେ।

ପରଦିନ ସାଧୁ ଗୋଟିଏ ଭୋଜି କରି ଦୁଇଦଳକୁ ଆଶ୍ରମକୁ ନିମନ୍ତ୍ରଣ କଲେ। ଭୋଜି ସମୟରେ ଦୁଇପକ୍ଷ ଦୁଇଧାଡ଼ି ହୋଇ ବସିଲେ। ସାଧୁ ଶିଷ୍ୟମାନଙ୍କୁ ବରାଦ କଲେ ଖାଦ୍ୟ ପରଶିବା ପାଇଁ। ସବୁ ପ୍ରକାର ଖାଦ୍ୟ ଅତ୍ୟନ୍ତ ସୁସ୍ୱାଦୁ ହୋଇଛି। ଦୁଇଦଳ ସାଧୁଙ୍କର ପ୍ରଶଂସାରେ ଶତମୁଖ।

ଏଇ ସମୟରେ ସାଧୁ ସେମାନଙ୍କୁ କହିଲେ, "ତୁମମାନଙ୍କ ପାଇଁ ବିଶେଷ ଏକପ୍ରକାରର କ୍ଷୀରି ତିଆରି କରାଯାଇଛି। ତମେ ସବୁ ଖାଇ ସାରିଲେ ସେଇଟା ଦିଆଯିବ।"

ଖାଇବା ଶେଷ ହୋଇ ଆସିବା ବେଳକୁ ବିଶେଷ କ୍ଷୀରି ପରଷା ଗଲା ସାଧୁଙ୍କ ନିର୍ଦେଶରେ। ସମସ୍ତେ ଥରେ ମାତ୍ର ମୁହଁରେ



ଦେଇ ଆଉ ଦେଇ ନାହାନ୍ତି । ସାଧୁ ପଚାରିଲେ, "କ'ଣ କ୍ଷୀର ସ୍ୱାଦ ଲାଗୁନାହିଁ ?"

ସମସ୍ତେ ଏକସ୍ୱରରେ କହିଲେ, "ସ୍ୱାଦ ଲାଗିବ କ'ଣ, ପିତାରେ ମୁହଁରେ ଦେଇ ହେଉନାହିଁ ।"

ସାଧୁ କହିଲେ, "ତେବେ ଶୁଣ, ଏହାର କାରଣ ହେଉଛି ଯେ ଏଇ କ୍ଷୀର କଲରାରେ ତିଆରି ହୋଇଛି । କିନ୍ତୁ ସେଇ ଶୁଖିଲା କଲରା ସବୁ ତୁମମାନଙ୍କ ସହିତ ତୀର୍ଥଯାତ୍ରା କରି ଫେରିଛନ୍ତି । ମୁଁ ଦେଇଥିବା ପୁଟୁଳି ଦୁଇଟିରେ ସେମାନେ ଥିଲେ । ମୁଁ ଭାବିଥିଲି କି ତୀର୍ଥଯାତ୍ରା ଯୋଗୁ ସେମାନଙ୍କ ମଧ୍ୟରେ ତିକ୍ତ ସ୍ୱାଦ ମଧୁର ସ୍ୱାଦରେ ପରିଣତ ହୋଇଥିବ ।"

ସାଧୁଙ୍କ କଥାର ମର୍ମାର୍ଥ ବୁଝିବା ପାଇଁ ଦୁଇଦଳ ହାତଧୋଇ ଆସି ସାଧୁଙ୍କ ପାଖରେ ଠିଆ ହୋଇ ରହିଲେ । ସାଧୁ ବୁଝାଇଲେ, "କ୍ଷୀର ସେଇ ତୀର୍ଥାଟନରୁ ଫେରିଥିବା କଲରା-ଗୁଡ଼ିକରେ ତିଆରି ହୋଇଛି କିନ୍ତୁ ତା'ର ତିକ୍ତାଗୁଣଟି ଏବେ ମଧ୍ୟ ରହିଛି ବୋଲି ତମେମାନେ ନିଜ ଅନୁଭୂତିରୁ ବୁଝିପାରିଛ । କଲରା ଜଡ଼ପଦାର୍ଥ ବୋଲି ତୀର୍ଥପର୍ଯ୍ୟଟନ ପରେ ମଧ୍ୟ ତା'ର କୌଣସି ପରିବର୍ତ୍ତନ ହେଲାନାହିଁ । କିନ୍ତୁ ମଣିଷଙ୍କ କଥା ଭିନ୍ନ । ଅନୁଭବ ଦ୍ୱାରା ଆମେ ବହୁତ କିଛି ବୁଝିପାରୁ । ମୋର ଆଶା ଓ ବିଶ୍ୱାସ ଯେ ତୁମମାନଙ୍କ ଉପରେ ତୀର୍ଥ ପର୍ଯ୍ୟଟନର ପ୍ରଭାବ ପଡ଼ିଥିବ ଓ ତୁମ ଭିତରେ ବଡ଼ ଏକ ପରିବର୍ତ୍ତନ ଆଣି ଦେଇଥିବ ।"

ଏଥର ସାଧୁଙ୍କର ମହତ୍ ଉଦ୍ଦେଶ୍ୟ ବୁଝିପାରି ଗଗନ ଓ ନିତ୍ୟାନନ୍ଦ ଦୁହେଁ ଦୁହିଁଙ୍କୁ ଆଲିଙ୍ଗନ କଲେ ଓ ସାଧୁଙ୍କୁ ଦୁହେଁ ପ୍ରଣାମ କରି କହିଲେ, "ଆଜିଠାରୁ ଆମ ଭିତରେ ଆଉ ଶତ୍ରୁତା ରହିବ ନାହିଁ । ଆମ ଭିତରେ ଓ ଗ୍ରାମବାସୀଙ୍କ ଭିତରେ ସର୍ବଦା ଭ୍ରାତୃଭାବ ରହିବ ।" ସାଧୁ ଆଶୀର୍ବାଦ କରି କହିଲେ, "ତୀର୍ଥାଟନର ପ୍ରକୃତ ଫଳ ଏଇ ।"





# ବାମନ ବୀର

ସେତେବେଳେ କାଶୀରାଜ୍ୟରେ ରାଜା ବ୍ରହ୍ମଦତ୍ତଙ୍କର ଶାସନ ଚାଲିଥାଏ । କାଶୀରାଜ୍ୟର ଜଣେ ବ୍ରାହ୍ମଣ ଘରେ ବୋଧିସତ୍ତ୍ୱ ଜନ୍ମ ନେଲେ ଜନ୍ମରୁ ସେ ଛୋଟିଆଟିଏ । ବଡ଼ ହେବାରୁ ଜଣାଗଲା ସେ ବାମନ । ତେଣୁ ଆଉ କିଛି ନାମ ଦିଆଯିବା ପୂର୍ବରୁ ସମସ୍ତେ ତାକୁ ବାମନ ବୋଲିହିଁ ଡାକୁଥା'ନ୍ତି । ଟିକିଏ ବଡ଼ ହୋଇଯିବା ପରେ ସେ ତକ୍ଷଶିଳାକୁ ଯାଇ ଗୁରୁଙ୍କଠାରୁ ଧନୁର୍ବିଦ୍ୟା ଶିକ୍ଷା କଲା ଓ ସେଥିରେ ପ୍ରବୀଣ ହୋଇ ଉଠିଲା । ସେ ଭାବିଲା ଏଇ ଧନୁର୍ବିଦ୍ୟାକୁ ନେଇ ମୁଁ ଜୀବିକାର୍ଜ୍ଜନ କରିବି, କିନ୍ତୁ ଯେତେ ରାଜାଙ୍କ ପାଖକୁ ଗଲା ସମସ୍ତେ ତା'ର ବାମନ ଗଠନକୁ ଦେଖି ତାକୁ ଫେରାଇଦେଲେ; କୌଣସି ଚାକିରି ମିଳିଲା ନାହିଁ ।

ଦିନେ ସେ ସହରର ଗୋଟିଏ ଗଳିରେ ବୁଲୁଛି ଦେଖିଲା ଜଣେ ବିରାଟକାୟ ଲୋକ ବସି ତନ୍ତରେ ଲୁଗା ବୁଣୁଛି । ତା' ପାଖକୁ ଯାଇ ବାମନ କହିଲା, "ହେ ଭାଇ ତୁମ ନାମ କ'ଣ ? ଆଉ ତୁମେ ଦେଖିବାକୁ ଏତେ ବଡ଼ ହୋଇ ଲୁଗା କାହିଁକି ବୁଣୁଛ ?"

ଲୋକଟି କହିଲା, "ମୋ ନାମ ଭୀମସେନ । କିନ୍ତୁ ଲୁଗା ବୁଣିବା ବ୍ୟତୀତ ଦ୍ୱିତୀୟ କାମ ଜାଣେନି ବୋଲି ଏଇକାମ କରୁଛି ।"

"ଆଚ୍ଛା କିଛି ଭଲ କାମ ପାଇଁ ମୁଁ ତୁମକୁ ଉପାୟ କହିଦେବି, ତମେ ମୋ ସହିତ ଆସିବ ?" ବାମନ ପଚାରିଲା ।

"ହଁ ନ ଆସିବି କାହିଁକି ?" ଏକଥା କହି ଭୀମସେନ ବାମନ ସହିତ ଗଲା । ଦୁହେଁ ଦୁଇଦିନ ଚାଲି ଚାଲି କାଶୀରାଜ୍ୟରେ ପହଞ୍ଚିଲେ ।

ବାମନ କହିଲା, "ଭାଇ ଏବେ ତୁମେ ରାଜଦରବାରକୁ ଯାଅ ଓ କୁହ ଯେ ତମେ



ଧନୁର୍ବିଦ୍ୟାରେ ପ୍ରବୀଣ ଓ ଗୋଟିଏ ଚାକିରି ଚାହ ।"

"ମୁଁ ତ ଆଦୌ ଧନୁ ଧରିବା ବି ଶିଖିନାହିଁ, ଆଉ ଧନୁର୍ବିଦ୍ୟାରେ ପ୍ରବୀଣ ବୋଲି ମିଛ କମିତି କହିବି ?" ଭୀମସେନ କହିଲା ।

"ଆରେ ତମେ ଯାଇ କୁହ । ତୁମର ଚେହେରା ଦେଖି ରାଜା କାମ ଦେବେ । ତା'ପରେ ମୁଁ ବୁଝିବି । ମୁଁ ଧନୁର୍ବିଦ୍ୟାରେ ଖୁବ୍ ପ୍ରବୀଣ । ମୁଁ ତମକୁ ସବୁ ଶିଖାଇଦେବି, ତମର କୌଣସି ଅସୁବିଧା ହେବନାହିଁ । ମୋତେ ତୁମର ସେବକ ଭାବରେ ରଖିବ ।" ବାମନ କହିଲା ।

ଭୀମସେନ ତା' କଥା ମାନିଗଲା । ରାଜ-ଦରବାରରେ ସେ ପହଞ୍ଚି ନିଜ କଥା କହିବା ମାତ୍ରେ ରାଜା ତା'ର ଚେହେରା ଦେଖି ତାକୁ ସଙ୍ଗେ ସଙ୍ଗେ କାମ ଦେଲେ । ମାସକୁ ହଜାରେ ମୁଦ୍ରା ବେତନ । ବାମନ ତା' ପାଖରେ ସେବକ ଭାବରେ ନିଯୁକ୍ତି ପାଇଲା ।

ଇତିମଧ୍ୟରେ କାଶୀନଗରୀ ଉପରେ ଏକ ଅଶୁଭ ବିପଦ ଆସି ପଡ଼ିଲା । କାହୁଁ ଏକ ମହାବଳ ବାଘ ଆସି କାଶୀର ନିକଟସ୍ଥ ଜଙ୍ଗଲରେ ରହି ବହୁତ ମଣିଷ ମାରି ଖାଇଲଣି । କାଶୀରାଜା ବ୍ୟସ୍ତ ହୋଇ ଭୀମସେନ୍‌କୁ କହିଲେ, "ଯାଅ ଶିଘ୍ର ବାଘଟିକୁ ମାରି ନେଇ ଆସ ।"

ଭୀମସେନ ରାଜାଙ୍କ ନିର୍ଦ୍ଦେଶ ଗ୍ରହଣ କରି ସଙ୍ଗେ ସଙ୍ଗେ ବାମନ ପାଖକୁ ଦୌଡ଼ିଲା । ସେ ବାମନକୁ ଦେଖି କାନ୍ଦ କାନ୍ଦ ହୋଇ କହିଲା, "ଦେଖ, ତୋ ବୁଦ୍ଧିରେ ପଡ଼ି ମୁଁ ତ ରାଜାଙ୍କୁ କହିଲି ଓ ଚାକିରି ପାଇଲି । ଏବେ କରେ କ'ଣ ଓ ଯାଏ କୁଆଡ଼େ? ମୋତେ ଏ ବିପଦରୁ ରକ୍ଷା କର ନହେଲେ ମୁଁ ଲୁଚିକରି ଏ ରାଜ୍ୟ ଛାଡ଼ି ପଳାଇବି ।"

"ମୋ କଥା ଶୁଣ । ତୁମେ ଏକେଲା ବାଘକୁ ମାରିପାରିବ ନାହିଁ । ତୁମେ ନଗର ବାହାରକୁ ଯାଇ ରାଜାଙ୍କ ଆଦେଶ କହି ହଜାରେ ଲୋକ ଏକଜ କର । ତା'ପରେ ସେମାନେ ଜଙ୍ଗଲ ଭିତରେ ପଶି ପାଟିଗୋଳ କରିବେ ବାଘ ବାହାରିବ । ସେମାନେହିଁ

ବାଘକୁ ମାରିବେ । ସେତେବେଳେ ତମେ ଗୋଟିଏ ବୁଦା ତଳେ ଲୁଚିଥିବ । ବାଘ ମରି ସାରିଲେ ବୁଦା ମୂଳରୁ ହାତରେ ଏକ ଲଠା ଧରି ବାହାରିବ ଓ ଲୋକମାନଙ୍କୁ ଗାଳିଦେଇ କହିବ, "କିଏ ଏ ବାଘକୁ ମାରିଲ କୁହ ତ ।

ରାଜାଙ୍କର ନିର୍ଦ୍ଦେଶ ଥିଲା ମୁଁ ଜୀଅନ୍ତା ତାକୁ ବାନ୍ଧି ନେଇଥା'ନ୍ତି । ଏବେ ରାଜା ରାଗିବେ ଓ ବାଘକୁ ମାରିଥିବା ଲୋକର ମୁଣ୍ଡକାଟ ହେବ ।" ତା'ପରେ ଦେଖିବ ଭୟରେ କେହି ସେ କଥା ଆଉ କହିବେ ନାହିଁ । ତମେ ଯାଇ ରାଜାଙ୍କୁ ଜଣାଇବ ଯେ ତୁମେ ବାଘକୁ ମାରିଛ ।




ଭୀମସେନ ଠିକ୍ ସେଇଭାବରେ ସବୁ କଲା । ବାଘ ମଲା । ଗ୍ରାମବାସୀମାନେ ଭୟଭୀତ ହୋଇ କେହି କିଛି କହିଲେ ନାହିଁ, କେବଳ ପରସ୍ପର ମୁହଁକୁ ଚାହିଁଲେ, ଭୀମସେନ ଯାଇ ରାଜଧାନୀରେ ପହଞ୍ଚି ରାଜାଙ୍କୁ ଖବର ଦେଲା ଯେ ସେ ବାଘକୁ ମାରି ଦେଇଛି ।

ରାଜା ଭୀମସେନର ପରାକ୍ରମରେ ମୁଗ୍ଧ ହେଲେ । ଏ ଖବର ଚାରିଆଡ଼େ ବ୍ୟାପି ଗଲା ଓ ଭୀମସେନକୁ ସମସ୍ତେ ପ୍ରଶଂସା କରିବାକୁ ଲାଗିଲେ । ପ୍ରଶଂସାର ମାତ୍ରା ଏତେ ଅଧିକ ହେଲା ଯେ କ୍ରମେ ଭୀମସେନ ଭାବିବାକୁ ଲାଗିଲା ଯେ ସେ ସତରେ ଜଣେ ମହାନ୍ ବୀର । ତେଣୁ ସେ ବାମନକୁ ଅନାଦର କରିବାକୁ ଲାଗିଲା । କିନ୍ତୁ ବାମନ ସେ ବିଷୟରେ କିଛି ନ କହି ଚୁପ୍ ଥାଏ ।

ଅନେକ ଦିନ ପରେ ଅଚାନକ କାଶୀରାଜ୍ୟକୁ ଗୋଟିଏ ପଡ଼ୋଶୀ ରାଜ୍ୟ ଆକ୍ରମଣ କଲା । ପଡ଼ୋଶୀ ରାଜ୍ୟର ରାଜା ଦୂତ ହାତରେ ଚିଠି ଦେଇ ପଠାଇଲେ କି, "ତୁମେ ମୋର ଅଧୀନତା ସ୍ୱୀକାର କର ବା ଯୁଦ୍ଧ କର ।" କାଶୀରାଜ ତତ୍‌କ୍ଷଣାତ୍ ଭୀମସେନକୁ ଡକାଇ ଆଦେଶ ଦେଲେ, "ତୁମେ ଆବଶ୍ୟକ ସୈନ୍ୟ ନେଇ ଉକ୍ତ ରାଜା ସହିତ ଯୁଦ୍ଧ କରି ତାକୁ ପରାଜିତ କରି ଫେରିଆସ ।" ଭୀମସେନକୁ ଯୋଦ୍ଧାର ପୋଷାକରେ ସଜ୍ଜିତ କରି ହାତରେ ଧନୁଶର ଧରାଇ ହାତୀ ଉପରେ

ବସାଇ ଦିଆଗଲା । ତା'ପରେ ସେ ହାତୀକୁ ନେଇ ସୈନ୍ୟମାନେ ଯୁଦ୍ଧଭୂମିକୁ ଗଲେ ।

ବାମନ ଜାଣିଥିଲା ଯେ ଭୀମସେନ ବିପଦରେ ପଡ଼ିଲଣି । ତାକୁ ତ ଧନୁଶର ଧରି ବି ଆସେନାହିଁ ତେଣୁ ସେ ଆଉ ଗୋଟିଏ ହାତୀ ଉପରେ ବସି ଧନୁଶର ଧରି ଭୀମସେନର ହାତୀ ପଛେ ପଛେ ଗଲା । ସାଙ୍ଗରେ ଅନେକ ଘୋଡ଼ସବାର ଓ ପଦାତିକ ସୈନ୍ୟଦଳ ସବୁ ଥା'ନ୍ତି ।

ଯୁଦ୍ଧଭୂମିରେ ଶତ୍ରୁସୈନ୍ୟମାନେ ଧାଡ଼ିବାନ୍ଧି ଛିଡ଼ା ହୋଇଥିଲେ । ସେମାନଙ୍କୁ ଦେଖି ଭୀମସେନ ଭୟରେ କମ୍ପିବାକୁ ଲାଗିଲା । ଦେହରୁ ଝାଳ ବୋହିଗଲା, ହାତରେ ଧନୁଧରି ମଧ୍ୟ ପାରୁ ନଥିଲା । ଭାବିଲା ହାତୀ ପିଠି ଉପରୁ ଡେଇଁପଡ଼ି ପଳେଇବ । ସେତେବେଳେ ବାମନ ଆସି ତାକୁ ସେଠାରେ ନ ରୋକିଥିଲେ ସେ ଡେଇଁ ତଳେପଡ଼ି ଘୋଡ଼ାମାନଙ୍କ ଖୁରା ତଳେ ମରିଥା'ନ୍ତା ।

ଏବେ ଅନନ୍ୟୋପାୟ ହୋଇ ବାମନହିଁ ଯୁଦ୍ଧର ନେତୃତ୍ୱ ନେଲା । ହାତୀ ଉପରେ ବସିଥାଏ ଭୀମସେନ । ବାମନ ସେଇ ହାତୀ ଉପରକୁ ଆସିଗଲା; ଶର ବର୍ଷଣ କରୁ କରୁ ହାତୀକୁ ଶତ୍ରୁସେନା ମଧ୍ୟକୁ ନେଇଗଲା ଓ ଶତ୍ରୁରାଜାଙ୍କ ପାଖରେ ଅବିଳମ୍ବେ ପହଞ୍ଚିଲା । ଦୌଡ଼ୁଥିବା ହାତୀର ପାଦତଳେ କେତେକ ସୈନ୍ୟ ଦଳି ହୋଇଗଲେ ଓ କେତେକ ଛିନ୍ନଛତ୍ର ହୋଇ ଇଆଡ଼େ ସିଆଡ଼େ ପଳେଇ-ଗଲେ । ବାମନର ବିଚକ୍ଷଣ ଯୁଦ୍ଧ ଚାଳନା ଯୋଗୁ ଅବଶେଷରେ ଶତ୍ରୁରାଜାଙ୍କୁ ସେ ବନ୍ଦୀ କରି ପାରିଲା ।

ଯୁଦ୍ଧକ୍ଷେତ୍ରରୁ ସମସ୍ତେ ଫେରି ଆସିଲେ । କିନ୍ତୁ ରାଜା ଇତିମଧ୍ୟରେ ଖବର ପାଇଥିଲେ ପ୍ରକୃତ ଧନୁର୍ଦ୍ଧାରୀ କିଏ । ରାଜା ବାମନକୁ ତାଙ୍କ ସୈନ୍ୟମାନଙ୍କ ଉପରେ ସେନାପତି ପଦବୀ ଦେଲେ । ବାମନ ଭୀମସେନକୁ ଅନେକ ଉପହାର ଦେଇ ଘରକୁ ପଠାଇ ଦେଲା ।





ଭାରତ-କାହାଣୀ

# ବିଜୟୀ ଆକ୍‌ବର-୧

ହୁମାୟୁନଙ୍କ ମୃତ୍ୟୁ ବେଳକୁ ତାଙ୍କ ପୁତ୍ର ଜଲାଲୁଦ୍ଦିନ୍ ମହମ୍ମଦ୍ ଆକବରଙ୍କ ବୟସ ହୋଇଥିଲା ଚଉଦ ବର୍ଷ । ତାଙ୍କର ଅଭିଷେକ ହେଲା ଓ ପିତୃବନ୍ଧୁ ବୈରାମ ଖାଁ ତାଙ୍କ ଅଭିଭାବକ ହେଲେ ।

ସଙ୍ଗେ ସଙ୍ଗେ ତରୁଣ ଆକ୍‌ବରଙ୍କୁ ଜଣେ ପ୍ରତାପଶାଳୀ ପ୍ରତିଦ୍ୱନ୍ଦୀଙ୍କୁ ସାମ୍‌ନା କରିବାକୁ ପଡିଲା । ସେ ହେଲେ ଶେର୍‌ଶାହ୍‌ଙ୍କ ଉତ୍ତରାଧିକାରୀଙ୍କ ସେନାପତି ହିମୁ । ଦୁଇ ପ୍ରତିଦ୍ୱନ୍ଦୀଙ୍କ ଭିତରେ ପାଣିପଥ ପ୍ରାନ୍ତର ଉପରେ ଲଢ଼େଇ ହେଲା । ଇତିହାସରେ ଏହା ଦ୍ୱିତୀୟ ପାଣିପଥ ଯୁଦ୍ଧ ନାମରେ ଖ୍ୟାତ ।





ହିମୁଙ୍କ ବିଶାଳ ସୈନ୍ୟବାହିନୀ ଆଗରେ ଆକବରଙ୍କ ପରାଜୟ ପ୍ରାୟ ନିଶ୍ଚିତ ବୋଲି ସମସ୍ତେ ଧରିନେଇଥିଲେ । କିନ୍ତୁ ସାହସୀ ଓ କୁଶଳୀ ସେନାପତି ହିମୁଙ୍କ ଦୁର୍ଭାଗ୍ୟ, ଗୋଟାଏ ତୀର ଯାଇ ତାଙ୍କ ଦେହରେ ବାଜିଲା । ସେ ଘୋଡ଼ାରୁ ପଡିଯିବାର ଦେଖି ତାଙ୍କ ସୈନ୍ୟମାନେ ଭଙ୍ଗଦେଲେ । ଆକବରଙ୍କର ଜୟ ହେଲା ।



ହିମୁ ବନ୍ଦୀ ହେଲେ । ତାଙ୍କୁ ଆକ୍‌ବରଙ୍କ ଆଗକୁ ନେଇ ଆସିଲେ ବୈରାମ ଖାଁ । ତା'ପରେ ସେ ବନ୍ଦୀର ଶିରଚ୍ଛେଦ କରିବା ନିମନ୍ତେ ଆକ୍‌ବରଙ୍କୁ କହିଲେ । ଆକ୍‌ବର କିନ୍ତୁ ଜଣେ ଅସହାୟ ଲୋକକୁ ହତ୍ୟା କରିବାକୁ ମନା କରିଦେଲେ । ବୈରାମ ଖାଁ ସେଉଠି ନିଜେ ହିମୁଙ୍କ ମୁଣ୍ଡ କାଟି ପକାଇଲେ ।

ଆକ୍‌ବର ଓ ବୈରାମ ଖାଁଙ୍କ ଭିତରେ ଥିବା ମନୋଭାବର ପାର୍ଥକ୍ୟ କ୍ରମେ ଅଧିକ ସ୍ପଷ୍ଟ ହେଲା । ବୈରାମ ଖାଁ ଆକବରଙ୍କ ଉପରେ ନିଜ ଆଧିପତ୍ୟ ଜାହିର୍ କରିବାକୁ ଚାହିଲେ । ହଠାତ୍ ଆକବର ତାଙ୍କଠୁଁ ସବୁ କ୍ଷମତା କାଢ଼ି ନେଲେ । ସେ ବିଦ୍ରୋହ କରି ପରାସ୍ତ ଓ ବନ୍ଦୀ ହେଲେ । ତେବେ ଆକବର ତାଙ୍କୁ ମକ୍‌କା ଯିବାକୁ ଅନୁମତି ଦେଲେ ।





ବୈରାମ ଖାଁ ମକ୍‌କା ଯାତ୍ରା କଲେ । କିନ୍ତୁ ତାଙ୍କର ଅନେକ ଶତ୍ରୁ ଥିଲେ । ସେମାନଙ୍କ ଭିତରୁ ଜଣେ ଆଫ୍‌ଗାନ ଜାତିର ଲୋକ ବାଟରେ ଛକି ରହିଥାଏ । ସେ ବେଳ ଉଣ୍ଡି ବୈରାମ ଖାଁଙ୍କ ଉପରେ ଚଢ଼ାଉ କଲା ଓ ତାଙ୍କୁ ହତ୍ୟା କଲା । ବୈରାମ ଖାଁଙ୍କ ସହ-ଯାତ୍ରୀମାନେ ଆସି ଆକ୍‌ବରଙ୍କୁ ସେ ସମ୍ବାଦ ଦେଲେ ।

ଦ୍ୱିତୀୟ ପାନିପଥ ଯୁଦ୍ଧରେ ଜୟଲାଭ କରି ଆକବର ବହୁତ ଖ୍ୟାତି ଅର୍ଜନ କଲେ । ତେବେ ସେଥିରେ ଗର୍ବ ନକରି ସେ ନିଜ ଶାସନକୁ ଦୃଢ଼ କରିବାରେ ମନୋନିବେଶ କଲେ । ପ୍ରଭାବଶାଳୀ ରାଜପୁତମାନଙ୍କ ସହ ସେ ବନ୍ଧୁତା ସ୍ଥାପନ କଲେ । ଜୟପୁରର ରାଜା ବିହାରୀମଲ୍ଲଙ୍କ କନ୍ୟାଙ୍କୁ ସେ ବିବାହ କଲେ ଓ ତାଙ୍କ ନାତି ମାନସିଂହଙ୍କୁ ସେନାପତି କଲେ ।





କିନ୍ତୁ ସାମ୍ରାଜ୍ୟ ବିସ୍ତାର ପାଇଁ ଆକବରଙ୍କର ପ୍ରବଳ ଆକାଂକ୍ଷା ଥିଲା । ଶାନ୍ତିଶୃଙ୍ଖଳାରେ ଥିବା ରାଜ୍ୟ ଗଣ୍ଡୱାନା ଉପରେ ତାଙ୍କ ଦୃଷ୍ଟି ପଡ଼ିଲା । ସେତେବେଳେ ସେ ରାଜ୍ୟର ରାଜା ମରିଯାଇଥିଲେ । ନାବାଳକ ରାଜପୁତ୍ର ବୀର ନାରାୟଣଙ୍କ ତରଫରୁ ରାଜ୍ୟ ଶାସନ କରୁଥିଲେ ତାଙ୍କ ମା ମହୀୟସୀ ରାଣୀ ଦୁର୍ଗାବତୀ ।

ଗଣ୍ଡୱାନା ଦଖଲ କରିବା ନିମନ୍ତେ ଆକବର ତାଙ୍କର ଦୁର୍ଦ୍ଦାନ୍ତ ସେନାପତି ଆସଫ୍ ଖାଁଙ୍କୁ ପଠାଇଲେ । ଆସଫ ଖାଁ ଆକସ୍ମିକ ଭାବରେ ରାଣୀ ଦୁର୍ଗାବତୀଙ୍କ ରାଜଧାନୀ ଆକ୍ରମଣ କଲେ । ରାଣୀ ଦୁର୍ଗାବତୀ ପୂର୍ବରୁ ପ୍ରସ୍ତୁତ ନଥିଲେ । ସେ ଯାହାହେଉ, ସେ ପ୍ରତିରକ୍ଷା ନିମନ୍ତେ ତତ୍ପର ହେଲେ ଓ ସେପାଇଁ ନିଜ ସୈନ୍ୟବାହିନୀ ପ୍ରସ୍ତୁତ କଲେ ।





ରାଣୀ ଦୁର୍ଗାବତୀ ସ୍ୱୟଂ ସୈନ୍ୟବାହିନୀର ନେତୃତ୍ୱ ନେଲେ । ପନ୍ଦର ହଜାର ସୈନ୍ୟ ବଳିଷ୍ଠ ଶତ୍ରୁ ପକ୍ଷକୁ ସେ ନିଜର ପ୍ରଚଣ୍ଡ ପରାକ୍ରମ ଦ୍ୱାରା ଭୟଭୀତ କରିଦେଲେ । ନାବାଳକ ରାଜପୁତ୍ର ବୀର ନାରାୟଣ ମାଙ୍କ ପାଖରେ ଥାଇ ଯୁଦ୍ଧ କରୁଥାନ୍ତି । କୌଶଳୀ ଆସଫ୍ ଖାଁ କୌଣସି ମତେ ରାଜପୁତ୍ରଙ୍କୁ ଆହତ କରିବା ପାଇଁ ଚେଷ୍ଟା କଲା ।

ବହୁ କୌଶଳ କରି ଆସଫ୍ ଖାଁ ରାଜପୁତ୍ରଙ୍କୁ ତାଙ୍କ ମା'ଙ୍କଠୁଁ ଦୂରେଇ ଆଣି ଭୀଷଣ ଆକ୍ରମଣ କଲା । ଦୁଇଟି ତୀର ଯାଇ ତାଙ୍କ ଛାତିରେ ବାଜିଲା । ରାଣୀ ଦୁର୍ଗାବତୀ ତାଙ୍କୁ ଦୁର୍ଗ ଭିତରକୁ ପଠାଇବାର ବ୍ୟବସ୍ଥା କଲେ । ରାଜପୁତ୍ରଙ୍କୁ ବେଷ୍ଟନ କରି ଗଲେ ଅନେକ ସୈନ୍ୟ । ପରାଜୟ ନିଶ୍ଚିତ ଜାଣି ରାଣୀ ନିଜେ ତରବାରି ଦ୍ୱାରା ନିଜ ପ୍ରାଣ ନେଲେ ।





ଆହତ ଅବସ୍ଥାରେହିଁ ରାଜପୁତ୍ର ବୀର ନାରାୟଣ ଦୁର୍ଗରୁ ବାହାରି ଆସି ସୈନ୍ୟବାହିନୀର ନେତୃତ୍ୱ ନେଲେ । ସେ ଆତ୍ମସମର୍ପଣ କଲେ ରକ୍ଷା ପାଇଥାନ୍ତେ । କିନ୍ତୁ ତାହା ନକରି ସେ ଭୀଷଣ ଯୁଦ୍ଧ କରି ପ୍ରାଣ ଦେଲେ । ଆସଫ ଖାଁ ଦୁର୍ଗ ଭିତରେ ପ୍ରବେଶ କରି ବିପୁଳ ଧନ ସମ୍ପଦ ଲୁଣ୍ଠନ କଲା । ରାଣୀ ଦୁର୍ଗାବତୀ ଓ ରାଜପୁତ୍ର ବୀର-ନାରାୟଣଙ୍କ ସ୍ମୃତି ଅମଳିନ ରହିଛି ।



# ରୋଜଗାର

ରୁଦ୍ରପୁର ଗ୍ରାମରେ ଶିବରାମ ନାମକ ଜଣେ କମାର ଥାଏ । ସେ ଗ୍ରାମର ଓ ଆଖପାଖ ଗ୍ରାମର ସମସ୍ତଙ୍କ ପାଇଁ କଟୁରି, କୋଦାଳ, ଛୁରି ଇତ୍ୟାଦି ତିଆରି କରେ । କମାର ଘରରେ ନିଆଁ ଜଳାଇବା, ହାତୁଡ଼ିରେ ତତଲ ଲୁହାକୁ ପିଟି ଜିନିଷ ତିଆରି କରାଇବା ଇତ୍ୟାଦି କାମରେ ସେ ଦିନରାତି ଲାଗିଥାଏ । ସେଥିପାଇଁ ପଇସା ମଧ୍ୟ ବେଶ୍ କିଛି ରୋଜଗାର କରେ ।

ଶିବରାମର ଗୋଟିଏ ମାତ୍ର ସନ୍ତାନ ଥାଏ; ସିଏ ହେଲା ତା'ର ପୁଅ ରାଜୁ । ରାଜୁ କିନ୍ତୁ ପିଲାଦିନରୁ ମା'ର ଆଦର ପାଇ ନଷ୍ଟ ହେବାକୁ ଲାଗିଲା । ମା' ଚାହୁଁଥାଏ ଗୋଟିଏ ବୋଲି ପୁଅ ସେ ପାଠପଢ଼ି ବାବୁ ହେବ; ଆଉ କ'ଣ ବାପାପରି ଦିନରାତି ହାତୁଡି ପିଟି ନିଆଁ ଜଳାଇ କାମ କରି ରହିବ? ସେଥିପାଇଁ ସେ ତାକୁ ସ୍କୁଲକୁ ପଠାଇଲା । ସ୍କୁଲରେ ରାଜୁ ଆଦୌ ପଢ଼ାପଢ଼ି କରେନାହିଁ, ସାଙ୍ଗସାଥୀ ଧରି ଇଆଡ଼େ ସିଆଡ଼େ ବୁଲିବା ହେଲା ତା'ର କାମ । କ୍ରମେ ରାଜୁ ବଡ଼ ହେଲା । ପାଠ ପଢ଼ୁଥାଏ ସିନା ହେଲେ ଭଲ ଭାବରେ କିଛି ପଢ଼ୁ ନଥାଏ । ଏଣେ ବାପପାଖରୁ କିଛି କାମ ମଧ୍ୟ ଶିଖୁ ନଥାଏ । କିନ୍ତୁ ସାଙ୍ଗମାନଙ୍କ ସହିତ ବୁଲିବା, ପଇସା ଉଡ଼େଇବା ଏଇସବୁ ବଦଭ୍ୟାସରେ ଖୁବ୍ ସମୟ ଦେଉଥାଏ ।

ଶିବରାମ କ୍ରମେ ବୁଢ଼ା ହେଲା । ଆଉ କାମ କରିପାରୁ ନଥାଏ ଆଗଭଳି । ଦିନେ ସେ ତା' ସ୍ତ୍ରୀକୁ ଡାକି କହିଲା, "ଦେଖ, ମୁଁ ତ ଚାହୁଁ ଚାହୁଁ ବୁଢ଼ା ହେଲି, ରାଜୁର ତ କୌଣସି ପରିବର୍ତ୍ତନ ହେଲାନାହିଁ । ଯାହା ବା ଟଙ୍କାକଉଡ଼ି ଘରେ ଅଛି ମୁଁ ମରିଯିବା ପରେ ସେ ଦଶଦିନ ଭିତରେ ଉଡ଼େଇ ଦେବ । ପରେ ତମେ ଦୁଇଜଣ ରାସ୍ତାରେ ଭିକ ମାଗି

ପଚିଶ ବର୍ଷ ତଳର 'ଚନ୍ଦାମାମା'ରୁ ଗୃହୀତ




ଖାଇବାକୁ ସାର ହେବ। ତେଣୁ ମୁଁ ବଞ୍ଚି ଥାଉଁ ଥାଉଁ କିଛି କର।"

"ତମେ ଏପରି ବାଜେ କଥା କୁହ ନାହିଁ। ତମେ ବୁଢ଼ା ହୋଇ ନାହିଁ କି ଆମ ପୁଅ ରୋଜଗାର କଲାଭଳି ବୟସକୁ ଆସିନାହିଁ।" ସ୍ତ୍ରୀ ଉତ୍ତର ଦେଲା।

ଶିବରାମ ଦୀର୍ଘନିଃଶ୍ୱାସ ଛାଡ଼ି କହିଲା, "ତୁମେ ଆଖି ଥାଉ ଥାଉ ଅନ୍ଧ ହେଉଛ। ମୁଁ ପୂର୍ବଭଳି କାମ କରିପାରୁ ନାହିଁ, ଏକଥା ନିଜେ ବୁଝି ପାରୁଛି। ଆଉ ରାଜୁକୁ ତୁମେ ଏ ପର୍ଯ୍ୟନ୍ତ ସାନପିଲାଭଳି ଭାବୁଛ ପରା! ଭୁଲ କରୁଛ।"

ତା ସ୍ତ୍ରୀ ଏକଥା ପୁଅକୁ କହିଲା। ପୁଅ ଟହାପଟ ଉତ୍ତର ଦେଲା, "ମା' ଦେଖୁନ ମୁଁ ଆଜି ବାହାରକୁ ଯାଉଛି ସବୁବେଳେ କାହିଁକି? ଚାକିରି ପାଇଁ କେବଳ। ଭଲ ଚାକିରି କ'ଣ ସହଜରେ ମିଳେ?" ଦେଖାଯାଉ ଚେଷ୍ଟା ତ କରୁଛି।"

ସ୍ତ୍ରୀ ଯାଇ ଶିବରାମକୁ କହିଲା, "ଦେଖ, ରାଜୁ ତ ଚାକିରିର ଚେଷ୍ଟାରେ ରହିଛି। ତମେ ଖାଲି ଖାଲି ତାକୁ ନିନ୍ଦା କରୁଛ।"

"ଚାକିରି? ରାଜୁ ଚାକିରି କରିବ? ସେ ଯାହା କରୁ ନା କାହିଁକି ତାକୁ କହିଦିଅ ଆଜିଠୁ ମୁଁ ତାକୁ ପଇସାଟାଏ ମଧ୍ୟ ଦେବିନାହିଁ। ମୁଁ କାମ ଆରମ୍ଭ କଲା ଦିନରୁ ସବୁଦିନେ କିଛି ନା କିଛି ରୋଜଗାର କରିଛି ଏବଂ ଦିନକୁ ତିନିଟଙ୍କା ଅନ୍ତତଃ ନିହାତି କମ୍‌ରେ ପାଇଛି। ରାଜୁକୁ ପଚାର ତିନିଟଙ୍କା ଛାଡ଼ ତିନି ସୁଉକା ରୋଜଗାର କରୁ ତ!" ରାଗିଯାଇ କହିଲା ଶିବରାମ।

ରାଜୁ ଘରକୁ ଫେରିବା ପରେ ତା'ର ମା' ଯାଇ ତାକୁ କହିଲା, "ପୁଅ, ତୋ ବାପା କହୁଛନ୍ତି ତୁ ଦିନକୁ ତିନି ସୁଉକା ସୁଦ୍ଧା ରୋଜଗାର କରିପାରିବୁ ନାହିଁ। ତୁ ରୋଜଗାର କରି ବାପାଙ୍କ କଥାକୁ ଭୁଲ୍ ପ୍ରମାଣିତ କର।"

"ଇଏ ବା କି ବଡ଼ କଥା। ମୁଁ ଅଳ୍ପ ସମୟ ମଧ୍ୟରେ ନେଇ ଆସୁଛି।" କହି ରାଜୁ ଘରୁ ବାହାରି ଗଲା। କିନ୍ତୁ ରାଜୁ ଜାଣି ନଥିଲା ଟଙ୍କା କିପରି ରୋଜଗାର କରାଯାଏ। ବୁଲି ବୁଲି ବହୁତ ସମୟ ପରେ ଘରେ ଆସି ପହଞ୍ଚିଲା। ମା' ପଚାରିଲେ, "କିଛି ରୋଜଗାର

ହେଲା ?" ରାଜୁ ତତ୍‌କ୍ଷଣାତ୍ ଉତ୍ତର ଦେଲା, "ମା' ମୁଁ ଖରାରେ ବୁଲି ବୁଲି ମୋ ମୁଣ୍ଡ ବୁଲାଇଛି, ମୁଁ ବହୁତ ଜାଗାକୁ ଯାଇ ଫେରିଛି । କିଛି ରୋଜଗାର ହୋଇନାହିଁ । ଖାଇପିଇ ଅପରବେଳକୁ ପୁଣି ଯିବି ।"

କିନ୍ତୁ ଖାଇସାରିବା ପରେ ରାଜୁ ଯେ ଶୋଇଲା ଯାଇ ରାତିକୁ ଉଠିଲା । ତତ୍ପର ହୋଇ ମା'କୁ କହିଲା, "ମା' ଆଜି ତ ଦିନ ଗଲାଣି । ତମେ ମୋତେ ତିନୋଟି ସୁଙ୍କା ଦେଇଦିଅ ଆଜିପାଇଁ, ମୁଁ କାଲି ତମକୁ ଫେରାଇ ଦେବି ।"

ରାଜୁର ମା' ଭାବିଲେ ପଇସା ନ ଦେଲେ ସେ ଅଯୋଗ୍ୟ ପ୍ରମାଣିତ ହେବ, ତେଣୁ ତିନୋଟି ସୁଙ୍କି ଦେଇଦେଲେ ।

ଶିବରାମ ଘରକୁ ଫେରିଲା ଓ ବାପାଙ୍କ ହାତରେ ତିନୋଟି ସୁଙ୍କି ଧରାଇ ଦେଇ ରାଜୁ କହିଲା, "ଏଇ ମୋର ରୋଜଗାର ।"

ଶିବରାମ ଚରଣି ଗୁଡ଼ିକୁ ଓଲଟପାଲଟ କରି ଦେଖିଲା ଓ ପଚାରିଲା, "ରାଜୁ, ସତକଥା କହ ତୁ ଏସବୁ କେଉଁଠାରୁ ଆଣିଛୁ ?"

"କେଉଁଠାରୁ ମାନେ ? ଦିନଯାକ ଖଟି ଖଟି ରୋଜଗାର କରି ଆଣିଛୁ ।" ରାଜୁ ଉତ୍ତର ଦେଲା ।

"ସତେ ? ଆଚ୍ଛା ଠିକ୍ ଅଛି ।" କହି ଶିବରାମ ଚରଣୀ ଗୁଡିକ ଚୁଲି ଭିତରକୁ ପକାଇଦେଲା ।




ଦ୍ୱିତୀୟ ଦିନ ରାଜୁର ମା' ରାଜୁକୁ ବୁଝାଇ କହିଲେ, "ପୁଅ, ତୁ ଆଜି ଯେମିତି ହେଲେ କିଛି କାମ କରି ପଇସା ରୋଜଗାର କରି ଆଣ । ନହେଲେ ତୋର ଓ ମୋର ଦୁହିଁଙ୍କର ମୁହଁ ଲଜ୍ଜାରେ ତଳକୁ ହୋଇଯିବ ।"

ରାଜୁ ମା' କଥା ସବୁ ଶୁଣିଲା । ମା' ନଥିବା ବେଳେ ସିନ୍ଦୁକ ଖୋଲି ଚୁପ୍‌ଚାପ ଟଙ୍କାଟିଏ ଧରି ବଜାରକୁ ଚଲିଗଲା । ଚରଣାରେ ପକୁଡ଼ି ଚଡ଼ା ସବୁ ଖାଇଲା ଓ ସନ୍ଧ୍ୟାକୁ ଅନ୍ୟ ତିନିଟି ଚରଣୀ ଧରି ଘରକୁ ଫେରିଲା । ଘରେ ପହଞ୍ଚି ତିନୋଟି ସୁଙ୍କି ବାପା ହାତରେ ଦେଇ କହିଲା, "ନିଅ ମୋ ରୋଜଗାର ପଇସା ।"

ପୂର୍ବଦିନ ପରି ସେଦିନ ମଧ୍ୟ ଶିବରାମ କହିଲା, "ମୁଁ ଠିକ୍ ଜାଣିଛି ଏ ପଇସା ପରିଶ୍ରମ କରି ତୁ ରୋଜଗାର କରିନାହୁଁ । ତୁ ମୋତେ ଠକିବାକୁ ଆଉ ଚେଷ୍ଟା କରନାହିଁ ।" ଏକଥା କହି ପୁଣି ସେ ଗୁରଣୀ ତିନୋଟି ଚୁଲିକୁ ପକାଇ ଦେଲା ।

ତୃତୀୟ ଦିନ ରାଜୁ ସିନ୍ଧୁକରୁ କିଛି ପାଇଲା ନାହିଁ । ସେଦିନ ସେ ଭାବିଲା ଯିମିତି ହେଲେ କିଛି ନିଜେ ରୋଜଗାର କରିବ । ହାଟକୁ ଗଲା । ବହୁତ ପରିଶ୍ରମ କରି କାମ କଲା । କିନ୍ତୁ ସଂଧ୍ୟା ପର୍ଯ୍ୟନ୍ତ ମାତ୍ର ଗୁରିଅଣା ରୋଜଗାର କରିଥିଲା । ତା'ପରେ ଦୁଇଦିନ କାମ କରି ସେ କୌଣସି ମତେ ଆଉର ତିନି ସୁକି ସଂଗ୍ରହ କଲା ।

ତା'ପରେ ରାଜୁ ଘରକୁ ଯାଇ ବାପା ହାତରେ ତିନୋଟି ଗୁରଣୀ ଦେଲା । ଏଥର ମଧ୍ୟ ତା'ର ବାପା ଗୁରଣୀଗୁଡ଼ିକ ଚୁଲିକୁ ଫୋପାଡ଼ି ଦେଲା, କିନ୍ତୁ ରାଜୁ ସଙ୍ଗେ ସଙ୍ଗେ ସେ ପଇସାଗୁଡ଼ିକ ନିଆଁ ଭିତରୁ ଉଠାଇ ଆଣିଲା । ଶିବରାମ ଅଳ୍ପ ହସି କହିଲା, "ପୁଅ, ଦୁଇଦିନ ତ ମୁଁ ଚୁଲିକି ପଇସା ଫୋପାଡ଼ି ଦେଇଥିଲି, ତୁ ତ ଆଣିବାର ଚେଷ୍ଟା ମଧ୍ୟ କରି ନଥିଲୁ । ଏଥର କିମିତି ତରବର ହୋଇ ପଇସାଗୁଡିକ ନିଆଁରୁ ଉଦ୍ଧାର କଲୁ? କାରଣ ତୁ ଏ ପଇସା ନିଜେ ରୋଜଗାର କରିଛୁ ବୋଲି ତା'ର ମୂଲ୍ୟ ବେଶି । ଆଉ କାହା ପଇସା ହେଲେ ମଣିଷ ତା'ର ମୂଲ୍ୟ ବୁଝେନାହିଁ । ନିଜେ ରୋଜଗାର କରିବା ଆନନ୍ଦର କଥା ।"

"ବାପା, ତମେ ସତ କହୁଛ । ଆଜି ମୁଁ ରୋଜଗାରର ମୂଲ୍ୟ ବୁଝିପାରିଛି ।" ରାଜୁ କହିଲା । ସେଇଦିନଠାରୁ ସେ ନିଜେ ରୋଜଗାର କରିବା ପାଇଁ ଚେଷ୍ଟା କଲା । ପରେ ସେ ଜଣେ ଯୋଗ୍ୟ ନାଗରିକ ଭାବରେ ଗଣ୍ୟ ହେଲା । ନିଜେ ଓ ବାପା ମା' ସମସ୍ତେ ସୁଖରେ ରହିଲେ ।



# ଶୁଭ ଅଶୁଭ

ବିଶ୍ୱନାଥ ମିଶ୍ରେ ଜରୁରୀ କାମରେ ଦୂର ସହର ଅଭିମୁଖେ ବାହାରି ଯାଉଥିଲେ । ସେତିକି-ବେଳେ ପଡ଼ୋଶୀ ଘର ଚାକର ପିଲା ମୁଣ୍ଡରେ ନୂଆ ବର୍ତ୍ତନ ଧରି ବାଟରେ ଯାଉଥିଲା । ସ୍ୱାମୀଙ୍କୁ ବିଦାୟ ଦେବା ନିମନ୍ତେ ବାହାରକୁ ଆସିଥିବା ଶ୍ରୀମତୀ ମିଶ୍ର କହିଲେ, "ତମେ ଟିକିଏ ସବୁର କର । ବର୍ତ୍ତମାନ ଶୁଭ ମୁହୂର୍ତ୍ତ ନୁହେଁ । ଘରୁ ବାହାରିପଡ଼ି ନୂଆ ବାସନକୁସନ ଦେଖିବା ଭଲ ନୁହେଁ ।" "ମୁଁ ଶୁଭ ଅଶୁଭ ମୁହୂର୍ତ୍ତରେ ବିଶ୍ୱାସ କରେ ନାହିଁ ।" ଏହା କହି ମିଶ୍ରେ ବାହାରି ଚାଲିଗଲେ ।

ତାଙ୍କର ସହରରୁ ପରଦିନ ଫେରି ଆସିବା କଥା । କିନ୍ତୁ ତିନିଦିନ ବିତିଗଲା; ସେ ଆସିଲେ ନାହିଁ । ଶ୍ରୀମତୀ ମିଶ୍ର ଉତ୍କଣ୍ଠାରେ ଗଣକ ଡକାଇଲେ । ଗଣକ କହିଲେ, "ଅଶୁଭ ମୁହୂର୍ତ୍ତର ପ୍ରଭାବ କାଟିବା ପାଇଁ କିଛି ତନ୍ତ୍ର ମନ୍ତ୍ର କରିବାକୁ ହେବ । ପଚିଶ ଟଙ୍କାରେ ଚଳାଇ ନେବ ।"

ପଚିଶ ଟଙ୍କା ଧରି ଗଣକ ଚାଲିଯିବାର କେଇ ଘଣ୍ଟା ପରେ ମିଶ୍ରେ ଆସି ପହଞ୍ଚିଲେ ଓ ସବୁ ଶୁଣି କହିଲେ, "ବର୍ତ୍ତମାନ ମୁଁ ବିଶ୍ୱାସ କରୁଛି—ବାହାରିବା ବେଳେ ଅଶୁଭ ମୁହୂର୍ତ୍ତ ହୋଇ ନ ଥିଲେ କି ପଚିଶ ଟଙ୍କା ପାଣିରେ ପଡ଼ିଆନ୍ତା ?"





# ପାଣ୍ଡିତ୍ୟର ପରିଚୟ

ମଗଧ ଦେଶରେ ସୂର୍ଯ୍ୟକାନ୍ତ ନାମକ ଜଣେ ରାଜା ରାଜତ୍ୱ କରୁଥା'ନ୍ତି । ତାଙ୍କ ଦରବାରରେ ମୃତ୍ୟୁଞ୍ଜୟ ନାମରେ ଜଣେ ପଣ୍ଡିତ ଥା'ନ୍ତି । ସେ ଥିଲେ ଖୁବ୍ ସ୍ୱାର୍ଥପର ଓ ଗର୍ବୀ । ଯେଉଁମାନେ ରାଜାଙ୍କୁ ଦେଖା କରିବାକୁ ଆସୁଥିଲେ ପ୍ରଥମେ ସେମାନେ ମୃତ୍ୟୁଞ୍ଜୟଙ୍କୁ ଦେଖାକରି ତାଙ୍କୁ ଖୁସି କରାଇଲେ ଯାଇ ରାଜଦରବାରକୁ ଯିବାପାଇଁ ଅନୁମତି ପାଉଥିଲେ । ଏପରି ଅବସ୍ଥାରେ କେହି କେହି ପଣ୍ଡିତ ରାଜଦର୍ଶନ ନ ପାଇ, ଅନ୍ୟ ରାଜ୍ୟକୁ ଯାଇ ବସବାସ କରି ରହୁଥିଲେ ।

ପରେ କୃଷ୍ଣକାନ୍ତ ...ାମକ ଜଣେ ଯୁବକ ଗୁରୁକୁଳରେ ବିଦ୍ୟା ...ମାପ୍ତ କରି ରାଜାଙ୍କୁ ଦେଖା କରି ଚାକିରି ...ରିବା ଉଦ୍ଦେଶ୍ୟରେ ଆସିଥାନ୍ତି । ସେ ସବୁ ଖବର ଓ ମୃତ୍ୟୁଞ୍ଜୟଙ୍କର ବଦଭ୍ୟାସ ବିଷୟରେ ...ଣିଲେ ।

ମୃତ୍ୟୁଞ୍ଜୟ ହୁଏତ ତାଙ୍କ ଖବର ପାଇବା ମାତ୍ରେ ଈର୍ଷା ପରାୟଣ ହୋଇ ତାଙ୍କର କିଛି ବିପଦ ଘଟାଇବେ । ତେଣୁ ସେ ରାଜନର୍ତ୍ତକୀ ମନ୍ଦାରମାଳର ଶରଣାପନ୍ନ ହେଲେ । ମନ୍ଦାରମାଳ କୃଷ୍ଣକାନ୍ତଙ୍କ ପାଣ୍ଡିତ୍ୟରେ ମୁଗ୍ଧ ହୋଇ ତାଙ୍କୁ ନିଜ ସହିତ ରାଜଦରବାରକୁ ନେଇଯିବା ପାଇଁ ନିର୍ଭର ପ୍ରତିଶ୍ରୁତି ଦେଲା ।

ଦିନେ ମନ୍ଦାରମାଳ ନିଜର ନୃତ୍ୟ ପ୍ରଦର୍ଶନ ପାଇଁ ରାଜଦରବାରକୁ ଗଲାବେଳେ କୃଷ୍ଣକାନ୍ତଙ୍କୁ ନିଜର ବାଦ୍ୟକାରୀମାନଙ୍କ ମଧ୍ୟରେ ନେଇଗଲା ।

ନୃତ୍ୟ ପ୍ରଦର୍ଶନ ସମାପ୍ତ ହୁଅନ୍ତେ ମନ୍ଦାରମାଳ ରାଜାଙ୍କ ସମୀପକୁ ଯାଇ କହିଲା, "ମହାରାଜ, ଏଇ ଯୁବକ ହେଉଛନ୍ତି କୃଷ୍ଣକାନ୍ତ ନାମକ ବିଖ୍ୟାତ ପଣ୍ଡିତ । ସେ ମୋର ଗୁରୁଜୀଙ୍କର ଭଣଜା । ସେ ଆପଣଙ୍କର କୃପା ଲାଭ କରିବାକୁ ଏଠାକୁ ଆସିଛନ୍ତି । ଆପଣ ତାଙ୍କ

ପାଣ୍ଡିତ୍ୟ ଓ ବିଦ୍ୟାଶିକ୍ଷା ପରୀକ୍ଷା କରି ଦେଖନ୍ତୁ ।"

ରାଜାଙ୍କ ପ୍ରଶ୍ନ ସବୁର ଉତ୍ତରରେ କୃଷ୍ଣକାନ୍ତ କହିଲେ, "ମହାରାଜ ମୁଁ କାଶୀରେ ବିଦ୍ୟା ସମାପ୍ତ କରି ଆସିଛି । ସଂସ୍କୃତରେ ପଞ୍ଚମହାକାବ୍ୟ ସହିତ ସମସ୍ତ ଶାସ୍ତ୍ର ଅଧ୍ୟୟନ କରିଛି । ଆଶୁକବିତା ମଧ୍ୟ ରଚନା କରିପାରେ ।"

ରାଜା ଅଳ୍ପ ଅଳ୍ପ ହସୁଥା'ନ୍ତି । ମଝିରେ ମୃତ୍ୟୁଞ୍ଜୟ ଆସି ପରିହାସପୂର୍ଣ୍ଣ କଣ୍ଠରେ କହିଲେ, "ଏପରି ବିଦ୍ୱାନ ପଣ୍ଡିତଙ୍କର ଦରବାରର ପଣ୍ଡିତମାନଙ୍କ ଦ୍ୱାରା ରାଜାଶ୍ରୟ ପ୍ରାପ୍ତ କରିବା ପାଇଁ ଚେଷ୍ଟା କରିବା ପରିବର୍ତ୍ତେ ରାଜନର୍ତ୍ତକୀଙ୍କର ସାହାଯ୍ୟ ନେବାର ଦୁର୍ଦ୍ଦଶା କାହିଁକି ହେଲା ?"

କୃଷ୍ଣକାନ୍ତ ଏହାର ଉତ୍ତରରେ ରାଜାଙ୍କୁ କହିଲେ, "ଯାହା ମଧ୍ୟରେ ସ୍ୱାର୍ଥ ଓ ଅହଂକାର ନ ଥାଏ ସେ ହିଁ ଯଥାର୍ଥରେ ପଣ୍ଡିତ ଓ ବିଦ୍ୱାନ । ସେଭଳି କେହି ଦେଖା ନ ଯିବାରୁ ମୋତେ ରାଜନର୍ତ୍ତକୀଙ୍କ ସାହାଯ୍ୟ ନେବାକୁ ପଡ଼ିଲା ।" ଏକଥା ଶୁଣି ରାଜା ଆଶ୍ଚର୍ଯ୍ୟ ହୋଇ ମୃତ୍ୟୁଞ୍ଜୟଙ୍କ ଆଡ଼କୁ ଚାହିଁଲେ । ମୃତ୍ୟୁଞ୍ଜୟ ତତ୍‌କ୍ଷଣାତ୍ କଠୋର ସ୍ୱରରେ କହିଲେ, "ମହାରାଜ, ଆପଣଙ୍କୁ ନିବେଦନ କରୁଛି ଏହି ଦୁଷ୍ଟ ବ୍ୟକ୍ତିକୁ ତୁରନ୍ତ ଦରବାରରୁ ବାହାର କରିଦେବାର ଅନୁମତି ଦିଅନ୍ତୁ । କାରଣ ଏ ବ୍ୟକ୍ତି ଅତ୍ୟନ୍ତ ଗର୍ବୀ । ରାଜଦରବାରର ଅବମାନନା କରୁଛି; ତା'ଛଡ଼ା ଦରବାରର ପଣ୍ଡିତ ପ୍ରତି ଆକ୍ଷେପ କରୁଛି ।"



କୃଷ୍ଣକାନ୍ତ ଅଳ୍ପ ହସି ମୃତ୍ୟୁଞ୍ଜୟଙ୍କୁ କହିଲେ, "ଜଣେ ପଣ୍ଡିତ ଅନ୍ୟଜଣେ ପଣ୍ଡିତଙ୍କୁ ବାହାର କରିଦେବାର ପଦ୍ଧତି ଏପରି ନୁହେଁ । ପାରିବେ ତ ତର୍କ ଓ ଜ୍ଞାନରେ ପରାଜିତ କରନ୍ତୁ ।"

ରାଜା ମୃତ୍ୟୁଞ୍ଜୟ ଓ କୃଷ୍ଣକାନ୍ତଙ୍କ ମଧ୍ୟରେ ପାଣ୍ଡିତ୍ୟର ପରାକାଷ୍ଠା କାହାର କେତେଦୂର ପରୀକ୍ଷା କରିବାର ବ୍ୟବସ୍ଥା କଲେ । ପ୍ରଥମେ ମୃତ୍ୟୁଞ୍ଜୟ କେତେଗୁଡ଼ିଏ ପ୍ରଶ୍ନ ପଚାରିଲେ । କୃଷ୍ଣକାନ୍ତ ସବୁଗୁଡ଼ିକର ଉତ୍ତର ସୁନ୍ଦର ରୂପେ ଦେଲେ । ଦରବାରରେ ସମସ୍ତେ କୃଷ୍ଣକାନ୍ତଙ୍କୁ ପ୍ରଶଂସା କଲେ । ପରେ କୃଷ୍ଣକାନ୍ତ ମୃତ୍ୟୁଞ୍ଜୟଙ୍କୁ କହିଲେ, "ମୁଁ ଆପଣଙ୍କୁ ମାତ୍ର ତିନୋଟି ପ୍ରଶ୍ନ ପଚାରିବି । ପ୍ରଥମଟି ହେଲା ଦଶଲୋକଙ୍କୁ କ'ଣ

ବାଣ୍ଟିବା ପରେ ତାହା ଆହୁରି ବଢ଼ି ଚାଲିଥିବ! ଦ୍ୱିତୀୟଟି ହେଲା ଉତ୍ତମ ପ୍ରଶ୍ନ କାହାକୁ କୁହାଯାଏ? ତୃତୀୟ, ଉତ୍ତମ ଗୁରୁ କିଏ?" ଏସବୁ ପ୍ରଶ୍ନ ଶୁଣି ମୃଚୁକୁନ୍ଦ କ୍ରୋଧରେ ଥରିଲେ ଓ ଯାହା ଇଚ୍ଛା ଇଆଡୁ ସିଆଡୁ ଉତ୍ତର ଦେଲେ। କିନ୍ତୁ କୃଷ୍ଣକାନ୍ତ କହିଲେ, "ଏସବୁ ପ୍ରକୃତ ଉତ୍ତର ନୁହେଁ।" "ତାହେଲେ ତମେହିଁ ନିଜ ପ୍ରଶ୍ନର ଉତ୍ତର ଦିଅ।" ମୃଚୁକୁନ୍ଦ କହିଲେ।

କୃଷ୍ଣକାନ୍ତ କହିଲେ, "ଦଶଲୋକଙ୍କୁ ବାଣ୍ଟିଲେ ବି ଯାହା ଆହୁରି ବଢ଼ି ଚାଲିଥାଏ ତାହା ହେଉଛି ପ୍ରସନ୍ନତା। ପ୍ରକୃତ ସନ୍ଦେହ ଦୂର କରିବାକୁ ଯେଉଁ ପ୍ରଶ୍ନ ପଚରାଯାଏ ତାହାହିଁ ଉତ୍ତମ ପ୍ରଶ୍ନ। କାରଣ ଏହା ପ୍ରତ୍ୟକ୍ଷରେ ଜ୍ଞାନ ଦେଇଥାଏ। ସେଥିପାଇଁ ବିଦ୍ୟାର୍ଥୀଙ୍କ ମଧ୍ୟରେ ଜ୍ଞାନର ତୃଷ୍ଣା ଜାଗରିତ କରାଇଥିବା ବ୍ୟକ୍ତିହିଁ ଉତ୍ତମ ଗୁରୁ। କାରଣ ଜ୍ଞାନର ତୃଷ୍ଣା କେବେ ନିବାରିତ ହୁଏ ନାହିଁ। ତେଣୁ ବ୍ୟକ୍ତି ଅଧିକରୁ ଅଧିକ ଜ୍ଞାନ ଅନ୍ୱେଷଣ କରିବାରେ ଲାଗିଥାଏ।"

ରାଜା ଏସବୁ ଉତ୍ତରରେ ସନ୍ତୁଷ୍ଟ ହେଲେ। ଦରବାରର ସଭାସଦ୍‌ମାନେ କୃଷ୍ଣକାନ୍ତଙ୍କର ଖୁବ୍ ପ୍ରଶଂସା କଲେ।

କୃଷ୍ଣକାନ୍ତଙ୍କଠାରୁ ମୃଚୁକୁନ୍ଦଙ୍କର ସାରା ବୃତ୍ତାନ୍ତ ଶୁଣି ରାଜା କ୍ରୋଧପୂର୍ଣ୍ଣ କଣ୍ଠରେ କହିଲେ, "ଆଜିପର୍ଯ୍ୟନ୍ତ ମୋ ମନରେ ଭ୍ରମ ଥିଲା ଯେ ମୃଚୁକୁନ୍ଦ ଏକ ମହାନ୍ ପଣ୍ଡିତ।"

କୃଷ୍ଣକାନ୍ତ କହିଲେ, "ମହାରାଜ, ମୁଁ ବୁଝିପାରୁଛି ଯେ ମୃଚୁକୁନ୍ଦଙ୍କ ଭିତରେ ଥିବା ଅହଂକାର ଓ ସ୍ୱାର୍ଥପର ଭାବ ଏବେ ଚାଲିଯାଇଛି। ତେଣୁ ଆପଣ ତାଙ୍କୁ କ୍ଷମା କରନ୍ତୁ।"

ରାଜା କୃଷ୍ଣକାନ୍ତଙ୍କ ଅନୁରୋଧ ରକ୍ଷା କଲେ ମଧ୍ୟ ମୃଚୁକୁନ୍ଦ ନିଜର ଦୁଷ୍ଟବୃତ୍ତି ବିଷୟରେ ସମସ୍ତେ ଜାଣି ପାରିଛନ୍ତି ବୋଲି ଭାବିବା ମାନେ ଦରବାରରେ ଆଉ ମୁହଁ ଦେଖାଇବାକୁ ଚାହିଁଲେ ନାହିଁ। ରାଜା ଓ କୃଷ୍ଣକାନ୍ତଙ୍କୁ ସମ୍ମାନ ଦେଖାଇ ସେ ନତମସ୍ତକ ହୋଇ ଦରବାରରୁ ବିଦାୟ ନେଇ ଚାଲିଗଲେ।



# ଆଦାୟ ସୂତ୍ର

ଗୋବିନ୍ଦ ଦାସ ନରହରିଙ୍କୁ ନିଜର ବିପଦ କଥା ଶୁଣାଇ ଦୁଇଶହ ଟଙ୍କା ଧାର ନେଲା । ଚାରି ପାଞ୍ଚମାସ ଚାଲିଗଲା । ଟଙ୍କା ଦେବାତ ଦୂରର କଥା ସେ ଘରେ ଲୁଚିଥାଇ କହିପଠାଏ ଯେ ସେ ଘରେ ନାହିଁ । ପରେ ନରହରିଙ୍କୁ ଖବର ମିଳିଲା କି ଗୋବିନ୍ଦ ଗାଈ କିଣିବାକୁ ହାଟକୁ ଯାଇଛି । ନରହରି ଯାଇ ହାଟରେ ପହଞ୍ଚିଲେ । ଗୋବିନ୍ଦକୁ ପସନ୍ଦ ଗାଈ ମିଳିଲାନି; ତେଣୁ ଟଙ୍କା ଧରି ଫେରୁଥାଏ । ସନ୍ଧ୍ୟା ହୋଇଗଲା । ନରହରି ମଧ୍ୟ ସାଙ୍ଗରେ ଫେରୁଥା'ନ୍ତି । ହଠାତ୍ ବୁଦା ଉହାଡ଼ରୁ ବାହାରି ଆସି ଜଣେ ଚୋର ଗୋଟାଏ ବଡ଼ ଠେଙ୍ଗା ଉଞ୍ଚାଇ କହିଲା, "ତୁମମାନଙ୍କ ପାଖରେ ଯାହା ଅଛି ଦେଇଦିଅ, ନହେଲେ ତୁମକୁ ମାରି ପକାଇବି ।"

ଚୋର ପାଖକୁ ଆସିବା ପୂର୍ବରୁ ହିଁ ଗୋବିନ୍ଦ ଦାସ ନରହରିଙ୍କୁ ସମସ୍ତ ଟଙ୍କା ଥଳିଟି ଦେଇ କହିଲା, "ଦେଖ, ତୁମଠୁ ନେଇଥିବା ଧାର ଟଙ୍କା ଓ ତା'ର ସୁଧ ବାବଦ ସବୁ କଟିଯାଇ ଯାହା ବଳିବ ମୋତେ ଫେରାଇ ଦେବ ।"

ଇତିମଧ୍ୟରେ ଚୋର ଟଙ୍କା ଥଳୀଟି ଛଡ଼ାଇ ନେଇ ଚାଲିଗଲା । ପରଦିନ ନରହରି ନିଜ ଚାକର ହାତରେ କୋଡିଏ ଟଙ୍କା ସହିତ ଚିଠିଟିଏ ଗୋବିନ୍ଦ ଦାସ ପାଖକୁ ପଠାଇଦେଲେ । ସେଥିରେ ଲେଖାଥିଲା, "ଗୋବିନ୍ଦ ଦାସ, ତୁମର କରଜ ସୁଝିଗଲା । ରାତିରେ ଯେଉଁ ଚୋର ଆସିଥିଲା ତା'ର ପାରିଶ୍ରମିକ, ମୋର ମୂଳଧନ ଓ ସୁଧ ସବୁ କାଟି ରଖି ବାକି କୋଡ଼ିଏ ଟଙ୍କା ପଠାଇଦେଲି ।"





# ପ୍ରତିକୃତି

ମିର୍ଜାପୁରର ଜମିଦାର ଗୋପାଳ ପ୍ରସାଦ ଖୁବ୍ ସରଳ ଲୋକ ଥିଲେ । କେବେ କୌଣସି ପ୍ରକାର ବଡ଼ଲୋକି ଦେଖାଉ ନଥିଲେ । ଯଦି କୌଣସି ଲୋକ ତାଙ୍କୁ ମିଛରେ ପ୍ରଶଂସା ବା ଖୋସାମଦ କରେ, ତେବେ ସେ ତା' ଉପରେ ରାଗି ଯାଉଥିଲେ ।

ଜମିଦାରଙ୍କ ପ୍ରାସାଦରେ ତାଙ୍କ ପୂର୍ବପୁରୁଷମାନଙ୍କର ଅନେକ ତୈଳଚିତ୍ର ଥିଲା । ଅଧିକାଂଶ ଚିତ୍ରରେ ଜମିଦାର ଅତ୍ୟନ୍ତ ଗମ୍ଭୀର ହୋଇ ବସିଥା'ନ୍ତି । ଗୋପାଳ ପ୍ରସାଦ ତାଙ୍କ ପୂର୍ବପୁରୁଷଙ୍କ ବିଷୟରେ ଅନେକ କଥା ଶୁଣିଥା'ନ୍ତି । ସେ ଭାବୁଥିଲେ ଚିତ୍ରକାରମାନେ ଝଙ୍କା ଯୋଗୁ ସମସ୍ତଙ୍କ ଚିତ୍ରଗୁଡ଼ିକରେ କଳ୍ପିତ ଭାବ ସବୁକୁ ରୂପ ଦେଇଛନ୍ତି ।

ଗୋପାଳ ପ୍ରସାଦ ନିଜର ଏକ ତୈଳଚିତ୍ର ବନାଇବାକୁ ଚାହିଁଲେ । ସେ ଚାହୁଁଥିଲେ କି ତାଙ୍କର ତୈଳଚିତ୍ରଟି ସହଜ ଓ ସ୍ୱାଭାବିକ ହେବା ଦରକାର, ସେଥିରେ କୌଣସି କୃତ୍ରିମତା ନ ଥିବ । ଭଲ ଚିତ୍ରକାର ଭାବରେ ସେ ଗୋବିନ୍ଦ ଭଟ୍ଟଙ୍କର ସୁନାମ ଆଗରୁ ଶୁଣିଥିଲେ ।

ଗୋପାଳ ପ୍ରସାଦ ଗୋବିନ୍ଦ ଭଟ୍ଟଙ୍କୁ ଡାକି କହିଲେ, "ମୁଁ ଶୁଣିଛି ଆପଣ ଜଣେ ମହାନ୍ ଚିତ୍ରକାର । କାରଣ ଆପଣ କୃତ୍ରିମ ଓ କଳ୍ପନାପ୍ରବଣ ନ ହୋଇ ବ୍ୟକ୍ତିର ଯଥାର୍ଥ ରୂପକୁ ଆଙ୍କିଥା'ନ୍ତି । ମୋର ଗୋଟିଏ ପ୍ରତିକୃତି ଆଙ୍କିବେ । ପସନ୍ଦ ହେଲେ ପୁରସ୍କାର ଯଥେଷ୍ଟ ଦିଆଯିବ ।"

ଜମିଦାରଙ୍କର ସବୁ ସର୍ତ୍ତ ଭଟ୍ଟ ମାନିନେଲେ ଓ କିଛିଦିନ ମଧ୍ୟରେ ହିଁ ଚିତ୍ରଟି ଆଙ୍କିଦେଲେ । ତା'ପରେ ସେଇଟି ଜମିଦାରଙ୍କ ପାଖକୁ ନେଇଯାଇ କହିଲେ, "ଏବେ ଆପଣଙ୍କର

ଚିତ୍ରଟି ସଂପୂର୍ଣ୍ଣ ହୋଇଛି । ଦୟାକରି ଦେଖି ମତାମତ ଦିଅନ୍ତୁ ।"

ଚିତ୍ରକାରଙ୍କ କଥା ଥିଲା ଯଥାର୍ଥ । କିନ୍ତୁ ତାଙ୍କୁ ପରୀକ୍ଷା କରିବା ପାଇଁ ଜମିଦାର କହିଲେ, "ତୁମେ ତ ନିଜ ଚିତ୍ରର ଏତେ ପ୍ରଶଂସା କରୁଛ! କିନ୍ତୁ ତୁମେ ନିଶ୍ଚିତ ଭାବରେ କହିପାରିବ କି ଏ ଚିତ୍ର ମୋର ଯଥାର୍ଥରେ ପ୍ରତିରୂପ ?"

ଗୋବିନ୍ଦ ଭଟ୍ଟ ତତ୍‌କ୍ଷଣାତ୍ କହିଲେ, "ଚିତ୍ରଟି ସମାପ୍ତ ହେବା ପରେ ମୁଁ ତାକୁ ଜୌନ୍‌ପୁରର ଜମିଦାର କୃଷ୍ଣଦାସ ରାୟଙ୍କୁ ଦେଖାଇଥିଲି । ସେ କହିଲେ ଏ ଚିତ୍ର ଆପଣଙ୍କ ଆକୃତିର ଯଥାର୍ଥ ପ୍ରତିରୂପ ।"

ଏକଥା ଶୁଣି ଜମିଦାର ଆଶ୍ଚର୍ଯ୍ୟ ହୋଇ ପଚାରିଲେ, "କୃଷ୍ଣଦାସ ରାୟଙ୍କ ପରିବାର ସହିତ ଆମ ପରିବାରର ବହୁତ ଦିନ ଧରି ମନୋମାଳିନ୍ୟ ରହିଛି । ତା'ଛଡ଼ା ତାଙ୍କର ଚିତ୍ରକଳା ପ୍ରତି ଏପରି କୌଣସି ଅଭିରୁଚି ବା ଆକର୍ଷଣ ଥିବାର ଜଣାଯାଏ ନାହିଁ । ଏପରି ସ୍ଥଳେ ତୁମେ ତାଙ୍କୁ କାହିଁକି ଚିତ୍ରଟି ଦେଖାଇଲ ମୁଁ ବୁଝିପାରୁ ନାହିଁ !"

ଗୋବିନ୍ଦ ଭଟ୍ଟ କହିଲେ, "ମୁଁ ଆପଣମାନଙ୍କ ମନୋମାଳିନ୍ୟ କଥା ଜାଣିଥିଲି । ସେଥିପାଇଁ ମୁଁ ଭାବିଲି କି ଚିତ୍ରରେ କିଛି ତ୍ରୁଟି ଥିଲେ ସେ ତାହାର ସୂଚନା ଦେବାକୁ କେବେ ସଙ୍କୋଚ ବୋଧ କରିବେ ନାହିଁ । ଅଧିକନ୍ତୁ ସେ କହିଲେ କି ଚିତ୍ରରେ ଭଲମନ୍ଦ ଉଭୟ ଏତେ ସ୍ୱାଭାବିକ୍ ଭାବରେ ରହିଛି ଯେ ହୁଏତ ମନ୍ଦ ଗୁଡ଼ିକ ଲକ୍ଷ୍ୟ କରି ଆପଣ ରାଗିଯାଇ ପାରନ୍ତି



ଯେପରି ଢାଳପାଖର ଦାଗଟି ! ମୁଁ ଠିକ୍ ସେଇଠି ସେଇପରି ଭାବରେ ଦେଇଛି ।"

ଜମିଦାର ଟିକିଏ ରାଗି କହିଲେ, "ଓଃ, ଏମିତି କଥା ? ତମେ ମୋ କର୍ମଚାରୀମାନଙ୍କୁ ଏ ଚିତ୍ର ଦେଖାଇଛ ?"

"ଆଜ୍ଞା ହଁ, ମୁଁ ଦେବାନ୍ ସାହେବ ଓ ରାଣୀଙ୍କୁ ମଧ୍ୟ ଏ ଚିତ୍ର ଦେଖାଇଛି । ଆପଣ ସେମାନଙ୍କ ମତାମତ ସ୍ୱୟଂ ଜାଣି ପାରିବେ ।"

ଜମିଦାର ଦେବାନଙ୍କୁ ଡ଼ାକି ଚିତ୍ରଟି ଦେଖାଇ ତାଙ୍କର ଅଭିମତ ପଚାରିଲେ । ଦେବାନ୍ କହିଲେ, "ଚିତ୍ରଟି ଭଲ ହୋଇଛି କୌଣସି ତ୍ରୁଟି ନାହିଁ । କିନ୍ତୁ ଆପଣଙ୍କ ପିତା, ପିତାମହଙ୍କର ଚିତ୍ରଗୁଡ଼ିକ ସବୁରେ ଗାମ୍ଭୀର୍ଯ୍ୟପୂର୍ଣ୍ଣ ତେଜସ୍ୱୀ ଦେଖାଯାଏ । ଆପଣଙ୍କର ସେଇଟା ନାହିଁ । ପ୍ରକୃତରେ ଆପଣ ରାଣାପ୍ରତାପଙ୍କଠାରୁ ମଧ୍ୟ ଅଧିକ ଗମ୍ଭୀର ଲାଗନ୍ତି ।"

ତା'ପରେ ରାଣୀଙ୍କୁ ଡ଼ାକି ରାଜା ଚିତ୍ର ଦେଖାଇ ତାଙ୍କର ଅଭିମତ ପଚାରନ୍ତେ ରାଣୀ କହିଲେ, "ଏ ଚିତ୍ରରେ ଆପଣଙ୍କ ମଧ୍ୟରେ ଥିବା ଗାମ୍ଭୀର୍ଯ୍ୟ କୌଣସି ଭାବରେ ଆପଣଙ୍କ ପିତାମହଙ୍କଠାରୁ କମ୍ ଜଣାଯାଉନାହିଁ । କିନ୍ତୁ ବୟସ ଦୃଷ୍ଟିରୁ ଦେଖିଲେ ଚିତ୍ରରେ ଅଢେଣ ଟିକିଏ ବୟସ୍କ ଲାଗୁଛନ୍ତି ମାତ୍ର ।"

ଜମିଦାର ସେମାନଙ୍କ କଥା ଶୁଣି ହସି ହସି କହିଲେ, "ମୋ ପ୍ରତି ଦେବାନଙ୍କର ଶ୍ରଦ୍ଧା, ଭକ୍ତି ଓ ବିଶ୍ୱାସ ଯୋଗୁ ଏବଂ ରାଣୀଙ୍କର ପ୍ରେମ ଓ ଅନୁରାଗ ଯୋଗୁ, ଦୁହେଁ ଚିତ୍ରଟିକୁ ଭୁଲ୍ ଭାବରେ ଦେଖିଛନ୍ତି । ତେଣୁ ମୋ ପ୍ରତି କୌଣସି ସଦ୍ଭାବ ନ ରଖିଥିବା କୃଷ୍ଣଦାସ ରାୟଙ୍କ ମତାମତହିଁ ନିର୍ଭୁଲ । ମୋ ଚିତ୍ରଟି ଜୀବନ୍ତ ଭାବରେ କରିଥିବାରୁ ତମେ ନିଜର ମହାନତା ଦେଖାଇଛ । ତମେ ଯଥାର୍ଥରେ ଜଣେ କୁଶଳୀ ଶିଳ୍ପୀ ।" ଏହିପରି ନାନା ଭାବରେ ଚିତ୍ରକାରଙ୍କର ପ୍ରଶଂସା ଗାନ କରି ରାଜା ତାଙ୍କୁ ଯଥେଷ୍ଟ ପୁରସ୍କାର ଓ ଉପହାରମାନ ପ୍ରଦାନ କରି ସମ୍ମାନ ଦେଖାଇଲେ ।





# ବିଷ୍ଣୁ ପୁରାଣ

ହିରଣ୍ୟକଶିପୁ କହିଲା, "ପ୍ରହ୍ଲାଦ ତୋ ଯୋଗୁ ଆଜି ମୁଁ ମୋର ଚିରଶତ୍ରୁ ବିଷ୍ଣୁଙ୍କ ସହିତ ଲଢ଼ିବାର ସୁଯୋଗ ପାଇବି।" ତା'ପରେ ସେ ଗଦା ଉଠାଇ ଲଢ଼ିବା ପାଇଁ ପ୍ରସ୍ତୁତ ହେଲା। ତତ୍କ୍ଷଣାତ୍ ଭଗବାନ୍ ନରସିଂହ ଏକ ପ୍ରଳୟ ଗର୍ଜନ ରୂପ ହୁଙ୍କାର ଦେଇ ହିରଣ୍ୟକଶିପୁକୁ ହାତରେ ଉଠାଇ ନେଲେ ସେତେବେଳେ ସମୟ ଥିଲା ସନ୍ଧ୍ୟା, ଦିନ ନୁହେଁ କି ରାତି ନୁହେଁ। ଯେଉଁଠି ନୃସିଂହଙ୍କର ଆବିର୍ଭାବ ହୋଇଥିଲା ଓ ସେ ସେଠାରୁ ଅଳ୍ପ ଦୂରରେ ଥିବା ହିରଣ୍ୟକୁ ଧରିଥିଲେ ତାହା ଥିଲା ଦ୍ୱାରବନ୍ଧ, ଘର ନୁହେଁ କି ବାହାର ନୁହେଁ। ସେ ତାକୁ ନିଜ ଜଂଘ ଉପରେ ରଖିଲେ ପୃଥିବୀ ଉପରେ ନୁହେଁ। ସେ ତା'କୁ ବିଦାରଣ କଲେ ନିଜ ନଖ ଦ୍ୱାରା ତାହାକୁ ସଜୀବ ବା ନିର୍ଜୀବ କୁହାଯାଇ ପାରିବ ନାହିଁ। ତେଣୁ ବ୍ରହ୍ମାଙ୍କ ବରଦାନର ସମସ୍ତ ସର୍ତ୍ତ ପୂରଣ କରିହିଁ ଭଗବାନ ନୃସିଂହ ତାକୁ ବିଦାରଣ କରି ବଧ କଲେ।

ହିରଣ୍ୟକଶିପୁର ମୃତ୍ୟୁ ଦେଖି ଅସୁରକୁଳ ନରସିଂହଙ୍କ ସହିତ ଯୁଦ୍ଧ କରିବାକୁ ଆସିଲେ ଓ ନିହତ ହେଲେ। ତାଙ୍କର ଉଗ୍ରରୂପକୁ ଦେଖି ଦେବତାମାନେ ମଧ୍ୟ ଭୟରେ କମ୍ପିଲେ। ଏପରିକି ଲକ୍ଷ୍ମୀଦେବୀ ମଧ୍ୟ ଡରିଗଲେ। ନାରଦ ଟିକିଏ ଦୂରରେ ଥାଇ ପ୍ରହ୍ଲାଦକୁ ସ୍ତୁତି କରିବାକୁ କହିଲେ। ପ୍ରହ୍ଲାଦର ସ୍ତୁତିରେ ଭଗବାନ ନିଜର ଉଗ୍ରରୂପ ପ୍ରତ୍ୟାହାର କରି ପୁଣି ଶ୍ରୀବିଷ୍ଣୁଙ୍କ ରୂପ ଧାରଣ କଲେ। ତାଙ୍କରି

୭. ତ୍ରିବିକ୍ରମ ବାମନାବତାର



ନିର୍ଦ୍ଦେଶରେ ପ୍ରହ୍ଲାଦ ପିତାଙ୍କର ଅନ୍ତ୍ୟେଷ୍ଟି-କ୍ରିୟା ଶେଷ କରି ନିଜେ ରାଜ୍ୟପ୍ରାପ୍ତ ହେଲେ । ଏଇପରି ଭାବରେ ଶ୍ରୀବିଷ୍ଣୁଙ୍କ ଦ୍ୱାରପାଳ ଜୟ ବିଜୟଙ୍କର ପ୍ରଥମ ଜନ୍ମ ସମାପ୍ତ ହେଲା ।

ଶ୍ରୀବିଷ୍ଣୁଙ୍କ ଆଦେଶ ଅନୁସାରେ ପ୍ରହ୍ଲାଦ ସିଂହାସନରେ ବସିଲେ ଓ ତାଙ୍କର ପୁଅ ବିରୋଚନର ଯୋଗ୍ୟ ବୟସ ପ୍ରାପ୍ତ ହୁଅନ୍ତେ ସେ ତାକୁ ସିଂହାସନରେ ବସାଇ ଜଙ୍ଗଲକୁ ତପସ୍ୟା କରିବାକୁ ଚାଲିଗଲେ । ବିରୋଚନଙ୍କ ପରେ ତାଙ୍କ ପୁତ୍ର ବଳୀ ସିଂହାସନରେ ବସିଲେ । ବଳୀ ପ୍ରଥମେ ନିଜ ଶକ୍ତି ବଳରେ ଉଚ୍ଚୈଶ୍ରବା ନାମକ ଦେବତାଙ୍କର ଅଶ୍ୱକୁ ଅଧିକାର କରି ଆଣିଲେ । ସେ ଅଶ୍ୱ ଜଳ, ସ୍ଥଳ ଓ ଆକାଶ ମାର୍ଗରେ ଗମନ କରିପାରୁଥିଲା ।

ଅମୃତ ବାଣ୍ଟିଲାବେଳେ ରାକ୍ଷସମାନଙ୍କ ପ୍ରତି ଯେଉଁ ଅନ୍ୟାୟ କରାଯାଇଥିଲା, ତାହାର ପ୍ରତିଶୋଧ ନେବା ପାଇଁ ବଳୀ ଦେବତାମାନଙ୍କ ସହିତ ଯୁଦ୍ଧ କରିବାକୁ ପ୍ରସ୍ତୁତ ହେଲେ । ଦେବତାମାନେ ଅମୃତ ଖାଇବା ଦ୍ୱାରା ଅଧିକ ବଳବାନ୍ ହୋଇଥିଲେ ଓ ସାହସୀ ମଧ୍ୟ ହୋଇଥିଲେ । ତେଣୁ ସେମାନେ ଉତ୍ସାହର ସହିତ ଯୁଦ୍ଧ କଲେ । ଦେବତା ଓ ରାକ୍ଷସ-ମାନଙ୍କ ମଧ୍ୟରେ ଘୋର ଯୁଦ୍ଧ ହେଲା ଓ ରାକ୍ଷସମାନେ ହାରିଗଲେ । କିନ୍ତୁ ରାକ୍ଷସ ଗୁରୁ ଶୁକ୍ରାଚାର୍ଯ୍ୟ ମୃତସଂଜୀବନୀ ମନ୍ତ୍ର ବଳରେ ସବୁ ମୃତ ରାକ୍ଷସଙ୍କୁ ବଞ୍ଚାଇ ଦେଲେ ।

ତା'ପରେ ବଳୀ ରାକ୍ଷସସେନାଙ୍କୁ ସଂଗଠିତ କରି ପୁଣି ଦିଗ୍‌ବିଜୟରେ ବାହାରିଲେ । ଏଥର କିନ୍ତୁ ସେ ଜିତିଲେ ଓ ତାଙ୍କର ରାଜ୍ୟବିସ୍ତାର କରିବାରେ ଲାଗିଲେ । ସେ ନିଜକୁ ଚକ୍ରବର୍ତ୍ତୀ ବୋଲାଇଲେ । ଶୁକ୍ରା-ଚାର୍ଯ୍ୟଙ୍କର ସହାୟତାରେ ସେ ଏକଶତ ଅଶ୍ୱମେଧ ଯଜ୍ଞ କରାଇଲେ ।

ତା'ପରେ ବଳୀ ଆହୁରି ଶକ୍ତିଶାଳୀ ହୋଇ ସ୍ୱର୍ଗ ଆକ୍ରମଣ କଲେ । ତାଙ୍କର ଆକ୍ରମଣରେ ଦେବତାମାନେ ଛିନ୍ନଭିନ୍ନ ହୋଇ କିଏ କୁଆଡ଼େ ଚାଲିଗଲେ । ଯେଉଁ କେତେକ ଦେବତା ଓ ଦିକ୍‌ପାଳମାନେ ଥିଲେ ସେମାନେ ବାଧ୍ୟହୋଇ



ବଳୀଙ୍କର ବଶ୍ୟତା ସ୍ୱୀକାର କଲେ । ସ୍ୱର୍ଗ, ମର୍ତ୍ତ୍ୟ ଓ ପାତାଳ ଚକ୍ରବର୍ତ୍ତୀ ହୋଇ ବଳୀ ନ୍ୟାୟ ଓ ଧର୍ମ ସହିତ ଶାସନ କାର୍ଯ୍ୟ ଚଳାଇଲେ । ସେତେବେଳେ ଇନ୍ଦ୍ରଙ୍କ ମାତା ଅଦିତି ସ୍ୱାମୀ କଶ୍ୟପଙ୍କୁ କହିଲେ, "ମୋର ସନ୍ତାନଗଣ ଦେବତା ହୋଇ ସୁଦ୍ଧା ସ୍ୱର୍ଗ ଛାଡ଼ି ଜଙ୍ଗଲରେ ବାସ କରୁଛନ୍ତି । ସେମାନଙ୍କୁ ସ୍ୱର୍ଗରେ ପୁନଃ ପ୍ରତିଷ୍ଠିତ କରିବା ପାଇଁ କିଛି ଉପାୟ ଚିନ୍ତା କରନ୍ତୁ ।"

କଶ୍ୟପ କହିଲେ, "ତମେ ବିଷ୍ଣୁଙ୍କୁ ଭକ୍ତିର ସହିତ ଧ୍ୟାନ କର ।" ଅଦିତି ଧ୍ୟାନ ଓ ଆରାଧନା କରି ଶ୍ରୀବିଷ୍ଣୁଙ୍କୁ ସନ୍ତୁଷ୍ଟ କଲେ । ବିଷ୍ଣୁ କହିଲେ, "ମୁଁ ପୁଣି ମଣିଷ ଜନ୍ମ ନେଇ ତୁମର ସନ୍ତାନଗଣଙ୍କୁ ସ୍ୱର୍ଗରେ ସ୍ଥାପନା କରାଇବି ।"

ତା'ପରେ ଶ୍ରୀବିଷ୍ଣୁ ନେଲେ ବାମନ ରୂପ । ସେ ହେଲେ ଦଶାବତାରର ପଞ୍ଚମ ବାମନାବତାର । ଉପନୟନ ପରେ ବାମନ ସମସ୍ତ ପ୍ରକାର ବୈଦିକ ବିଦ୍ୟା ସମାପ୍ତ କଲେ ।

ସେହି ସମୟରେ ଚକ୍ରବର୍ତ୍ତୀ ବଳୀ ନର୍ମଦା ତୀରରେ ଶୁକ୍ରାଚାର୍ଯ୍ୟଙ୍କ ସାହାଯ୍ୟରେ ବିଶ୍ୱଜିତ୍ ଯଜ୍ଞ ଆରମ୍ଭ କରିଥା'ନ୍ତି ଓ ସେଥିପାଇଁ ଦାନ ଦେଉଥା'ନ୍ତି । ବାମନ ହାତରେ କମଣ୍ଡଳୁ ଓ ଛୋଟ ତାଳପତ୍ର ଛତାଟିଏ ଧରି ଯାଇ ଯଜ୍ଞରେ ପହଞ୍ଚିଲେ । ତାଙ୍କ ଶରୀରରୁ ନିର୍ଗତ ହେଉଥାଏ ବ୍ରହ୍ମ ତେଜ ।

ଯଜ୍ଞଶାଳାରେ ବାମନଙ୍କୁ ଦେଖି ସମସ୍ତେ ଆଶ୍ଚର୍ଯ୍ୟ ଓ ଆନନ୍ଦିତ ହେଲେ । ବାମନ ବଳୀଙ୍କ ପାଖକୁ ଯାଇ ତାଙ୍କର ଜୟଧ୍ୱନି କଲେ । ବାମନଙ୍କୁ ଦେଖିବା ମାତ୍ରେ ଚକ୍ରବର୍ତ୍ତୀ ବଳୀଙ୍କ ମନରେ ଅପାର ଆନନ୍ଦ ଆସିଲା । ସେ କହିଲେ, "ହେ ବାଳକ, ଆପଣଙ୍କୁ ଦେଖିଲେ ଲାଗୁଛି ଆପଣ ବାଳକ ହେଲେ ମଧ୍ୟ ମହାତେଜସ୍ୱୀ ବ୍ରହ୍ମଋଷି ଆପଣ ଏଠାକୁ କେଉଁ ଉଦ୍ଦେଶ୍ୟରେ ଆସିଛନ୍ତି ?"

"ମୁଁ ତୁମ ସହିତ ସାକ୍ଷାତ୍ କରିବାକୁହିଁ ଆସିଛି । ତୁମର ପିତା, ପିତାମହ ସମସ୍ତେ ବଡ଼ ବଡ଼ ବୀର ଥିଲେ, ତୁମର ଶୌର୍ଯ୍ୟ ଓ ପରାକ୍ରମ ଦିଗନ୍ତ ବିସ୍ତାରୀ ।" ବଳୀ ଏସବୁ



କଥା ଶୁଣି ହସି ହସି କହିଲେ, "ଆପଣ ଶୌର୍ଯ୍ୟ ଓ ପରାକ୍ରମ କଥା ତର୍କ କରୁଛନ୍ତି। ଯୁଦ୍ଧ କରିବାର ପ୍ରେରଣା ଆଉ ଦେଉ ନାହାନ୍ତି ତ? କାରଣ ଏବେ ଯଜ୍ଞ ପାଇଁ ମୁଁ ଦୀକ୍ଷିତ, ତେଣୁ ଯୁଦ୍ଧର ପ୍ରଶ୍ନ ମଧ୍ୟ ଉଠୁନାହିଁ।"

ବଳୀଙ୍କ କଥା ଶୁଣି ବାମନ କହିଲେ, "ଯୁଦ୍ଧ କଥା ନୁହେଁ ମୁଁ ଆସିଛି ଦାନବୀର ଚକ୍ରବର୍ତ୍ତୀ ବଳୀଙ୍କଠାରୁ ଦାନ ନେବାକୁ।"

"ଓ ଦାନ? ଯାହା ଇଚ୍ଛା ମାଗନ୍ତୁ। ମୁଁ ଆପଣଙ୍କୁ ଦେବି; କଥା ଦେଉଛି।" ବଳୀ କହିଲେ।

ସେତେବେଳକୁ ଶୁକ୍ରାଚାର୍ଯ୍ୟ ଜାଣିଗଲେଣି ବଳୀର ଭବିଷ୍ୟତ ଘଟଣା। ତେଣୁ ସେ ବଳୀଙ୍କୁ ନିଭୃତକୁ ଡାକିନେଇ ବୁଝାଇ କହିଲେ, "ଏ ଯେଉଁ ବାମନଙ୍କୁ ଦେଖୁଛ, ସେ ସାକ୍ଷାତ୍ ବିଷ୍ଣୁ। ସେ ତୁମର ସର୍ବସ୍ୱ ଲୁଟି ନେବାକୁ ଆସିଛନ୍ତି। ତେଣୁ ତମେ ତାଙ୍କୁ କୌଣସି ପ୍ରକାର ଦାନ ଦିଅନାହିଁ।" ଚକ୍ରବର୍ତ୍ତୀ ବଳୀ କହିଲେ, "ଯଦି ପ୍ରକୃତରେ ସେ ବିଷ୍ଣୁ ତେବେ ତା'ଠାରୁ ଆଉ ସୌଭାଗ୍ୟର ବିଷୟ କ'ଣ ହୋଇପାରେ? ତା'ପରେ ମୁଁ ତାଙ୍କୁ କଥା ଦେଇ ଫେରାଇବା କିପରି?"

"ଆତ୍ମରକ୍ଷା ପାଇଁ ସବୁ କିଛି କରାଯାଇ ପାରେ।" ଶୁକ୍ରାଚାର୍ଯ୍ୟ କହିଲେ।

"ଯାହା ହେଉ ପଛେ ମୁଁ କଥା ଦେଇ ଫେରାଇବି ନାହିଁ। ଅନ୍ୟାନ୍ୟ ରାଜାଙ୍କ ପରି ଯଶ ପାଇଁ ମୁଁ ଦାନ କରୁନାହିଁ। ତେଣୁ ମୋର ଭୟ କାହାପାଇଁ?" ବଳୀ କହିଲେ।

ଏକଥା ଶୁଣି ଶୁକ୍ରାଚାର୍ଯ୍ୟ କ୍ରୋଧରେ ଅଧୀର ହୋଇ କହିଲେ, "ମୁଁ ତୁମର ଗୁରୁ ବୋଲି ସେହି ଅଧିକାରରେ କହିଲି। ଆଉ ତମେ ଗୁରୁ ବାକ୍ୟକୁ ଧିକ୍କାର କରୁଛ? ମନେରଖ ତମେ ତୁମର ସର୍ବସ୍ୱ ହରାଇବାକୁ ଯାଉଛ।"

ବଳୀ ନମ୍ର ହୋଇ କହିଲେ, "ଗୁରୁଦେବ ଆପଣ ବୋଧହୁଏ ଅପଯଶ ପାଇଁ ଡରୁଛନ୍ତି। ମୁଁ କିନ୍ତୁ ସୁଖଦୁଃଖକୁ ସମାନ ରୂପରେ ଦେଖି ଦାନ ଦେଉଛି। ଯଦି ଆପଣ ମୋ ଉପରେ ଅଭିଶାପ ଦେଉଛନ୍ତି, ତେବେ ମୁଁ ତାକୁ ବରଦାନ ରୂପରେ ସ୍ୱୀକାର କରୁଛି।"

ବଳୀ ବାମନଙ୍କ ନିକଟକୁ ଯାଉଛନ୍ତି ଦେଖି ଶୁକ୍ରାଚାର୍ଯ୍ୟ ପୁଣି କହିଲେ, "ହେ ଦାନବରାଜ, ଦେଖ ସ୍ୱୟଂ ବିଷ୍ଣୁ ହିଁ ବାମନ ରୂପରେ ଆସିଛନ୍ତି। ତମେ ଯେ ଏତେ ପରିଶ୍ରମ କରି ତିନିପୁର ଜୟ କରିଥିଲ ସେ ସବୁକୁ ସେ ଏକ ମୁହୂର୍ତ୍ତରେ ଜୟ କରିନେବେ। ତେଣୁ ତୁମେ ସାବଧାନ ରୁହ।"



ବଳୀ ଅଳ୍ପ ହସି କହିଲେ, "ଏ ଶରୀର ନଶ୍ୱର, ଆଉ ସେ ଶରୀରର ଶ୍ରମ ବି ନଶ୍ୱର। ତେଣୁ ସେଥିପାଇଁ ଏତେ ଚିନ୍ତା କାହିଁକି?"

ଶୁକ୍ରାଚାର୍ଯ୍ୟ କହିଲେ, "ତୁମର ପରାଜୟରେ ତୁମର ବିନାଶ ସଙ୍ଗେ ସଙ୍ଗେ ସମଗ୍ର ଦାନବକୁଳ ବିନାଶ ପ୍ରାପ୍ତ ହେବ।"

"ସେ କଥା ସତ। କିନ୍ତୁ ଜଣେ ଦାନବରାଜା ଧର୍ମ ଓ ନ୍ୟାୟ ନେଇ ରାଜ୍ୟଶାସନ କରୁଥିଲା ଓ ଶ୍ରୀବିଷ୍ଣୁଙ୍କୁ ଦାନ ଦେଇ ଧ୍ୱଂସପ୍ରାପ୍ତ ହେଲା—ଏଇ ଯଶ ତ ଚିରକାଳ ପାଇଁ ରହିବ।" ବଳୀ ଉତ୍ତର ଦେଲେ।

ତା'ପରେ ବଳୀ ବାମନଙ୍କ ନିକଟରେ ପହଞ୍ଚିଲେ; ତାଙ୍କର ଧର୍ମପତ୍ନୀ ବିନ୍ଧ୍ୟାବଳୀ ସ୍ୱର୍ଣ୍ଣକଳସରେ ପାଣି ନେଇ ବାମନଙ୍କର ପାଦ ପ୍ରକ୍ଷାଳନ କଲେ। ସେ ଜଳ ଅତିକୁ ଭକ୍ତିଭାବରେ ବଳୀ ନିଜ ମଥାରେ ନେଇ ସିଞ୍ଚିଲେ ଓ କହିଲେ, "ହେ ବ୍ରାହ୍ମଣ, ମୋର ପୂର୍ବ ତପସ୍ୟା ଓ ଭାଗ୍ୟ ଯୋଗୁ ଆଜି ଆପଣ ଏଠାରେ ପାଦ ଦେଇଛନ୍ତି ଆପଣ ଯାହା ଇଚ୍ଛାନ୍ତି ମାଗି ନିଅନ୍ତୁ। ରତ୍ନ, ସୁବର୍ଣ୍ଣ, ମହଲ, ଦାସଦାସୀ, ସୁନ୍ଦରୀ ସ୍ତ୍ରୀ, ହାତୀ, ଘୋଡ଼ା, କ୍ଷେତ, ସାମ୍ରାଜ୍ୟ, ଯାହା ଇଚ୍ଛିବେ ତାହା ନେବେ। ଏପରିକି ମୋର ଶିରେ ଇଚ୍ଛିଲେ ମଧ୍ୟ ମୁଁ ତାହା ଦେବାକୁ ପ୍ରସ୍ତୁତ ଅଛି।"

"ମହାବଳୀ, ମୁଁ ଜାଣେ ତୁମେ ସତ୍ୟବାଦୀ ଯାହା କହିଛ ସବୁ ଦେବ; କିନ୍ତୁ ଏସବୁ ମୁଁ ନେଇ କରିବି କ'ଣ? ମୁଁ ଦରିଦ୍ର ବ୍ରାହ୍ମଣ। ଇଚ୍ଛେ କେବଳ ତିନିପାଦ ମେଦିନୀ। ସେଇତିକି ମୋ ପାଇଁ ପର୍ଯ୍ୟାପ୍ତ।" ବାମନ କହିଲେ।

"ଏଇ ମାତ୍ର ଆପଣଙ୍କର ଭିକ୍ଷା। କେଉଁ ସ୍ଥାନରେ ନେବେ କୁହନ୍ତୁ ମୁଁ ଦେଇ




ହେବ ।" ଏକଥା କହି ବଳୀ ଦାନ ପାଇଁ ଗଡୁରୁ ପାଣି ଢାଳିଲେ । ସେତେବେଳେ ଗଡୁର ନଳୀ ମଧ୍ୟରୁ ପାଣି ବାହାରିଲା ନାହିଁ । କାରଣ ଶୁକ୍ରାଚାର୍ଯ୍ୟ ସେଠାରେ ଏକ ମକ୍ଷିକା ରୂପରେ ପାଣିର ଦ୍ୱାର ବନ୍ଦ କରି ବସିଥା'ନ୍ତି । ଏକଥା ବାମନ ଜାଣିପାରି ଗୋଟିଏ କୁଶରେ ପାଣିର ମୁହଁ ଖୋଲିଦେଲେ । ସେଥିପାଇଁ ଶୁକ୍ରାଚାର୍ଯ୍ୟଙ୍କର ଗୋଟିଏ ଚକ୍ଷୁ ଅନ୍ଧ ।

ତା'ପରେ ଶୁକ୍ରାଚାର୍ଯ୍ୟ ସେହି ସ୍ଥାନ ଛାଡ଼ି ଦୂରକୁ ଚାଲିଗଲେ । ଦାନ ପାଇଁ ସମସ୍ତ ବିଧିବିଧାନ ସମାପ୍ତ ହେବା ପରେ ବଳୀ କହିଲେ, "ଏବେ ଆପଣଙ୍କର ତିନିପାଦ ଜମି ଇଚ୍ଛା ଅନୁସାରେ ବାଛି ନିଅନ୍ତୁ ।"

ବାମନ ଅଳ୍ପ ହସି ସେହିଠାରେହିଁ ଠିଆ ହୋଇଥା'ନ୍ତି । ଆଉ ତାଙ୍କର ଶରୀର କ୍ରମଶଃ ବୃଦ୍ଧି ହେଉଥାଏ । ପୃଥିବୀ ଆକାଶ ବ୍ୟାପୀ ତାହା ବୃଦ୍ଧି ହୋଇ ଚାଲିଲା । ବାମନ ବିଶ୍ୱରୂପ ଧାରଣ କଲେ । ଗୋଟିଏ ପାଦ ତାଙ୍କର ସାରା ପୃଥିବୀକୁ ଆଚ୍ଛାଦନ କରିଥିଲା । ଦ୍ୱିତୀୟ ପାଦ ଆକାଶକୁ ଆଚ୍ଛାଦନ କରି ରହିଲା । ସେତେବେଳେ ବ୍ରହ୍ମା ଓ ଅନ୍ୟ ଦେବତାମାନେ ତାଙ୍କ ପାଦରେ ଜଳ ଢ଼ାଳି ଅଭିଷିକ୍ତ କଲେ । ତାଙ୍କ ପାଦରୁ ନିର୍ଗତ ଜଳ ଆକାଶଗଙ୍ଗା ରୂପେ ପ୍ରବାହିତ ହେଲା ।

ସେତେବେଳେ ତ୍ରିବିକ୍ରମ ବାମନ ବଳୀଙ୍କୁ ପଚାରିଲେ, "ହେ ଚକ୍ରବର୍ତ୍ତୀ ବଳୀ, କୁହ ମୋର ତୃତୀୟପାଦ କେଉଁଠି ରଖିବ ?"

ବଳୀ ଦେଖିଲେ ବାମନଙ୍କର ନାଭିପଦ୍ମରୁ ବାହାରିଛି ଆଉରି ଏକ ପାଦ । ସେତେବେଳେ ବଳୀ ଆଣ୍ଠୁମାଡ଼ି ବାମନଙ୍କ ପାଖରେ ବସି ମଥାନତ କରି କହିଲେ, "ହେ ତ୍ରିବିକ୍ରମ ବିଷ୍ଣୁ, ନିଅନ୍ତୁ ମୋର ଶିର ଉପରେହିଁ ଆପଣଙ୍କର ତୃତୀୟ ପଦ୍ମର ସ୍ଥାପନ କରନ୍ତୁ ।"

ବାମନ ବିଶ୍ୱରୂପ ସମ୍ବରଣ କରି ସ୍ୱାଭାବିକ ରୂପ ଧାରଣ କଲେ ଓ ବଳୀଙ୍କ ମସ୍ତକ ଉପରେ ଗୋଟିଏ ପାଦ ସ୍ଥାପନ କରି କହିଲେ, "ହେ ବଳୀ, ସାରା ପୃଥିବୀ ଓ ସାରା ଆକାଶକୁ ଆଚ୍ଛାଦିତ କରିଥିବା ମୋର ପାଦ ତୁମର ସମଗ୍ର ମସ୍ତକକୁ ଆଚ୍ଛାଦନ କରି ପାରୁନି ।"

ସେତିକିବେଳେ ପ୍ରହ୍ଲାଦ ଆସି କହିଲେ, "ଭଗବାନ, ମୋର ଏ ନାତି ଆପଣଙ୍କର ଶତ୍ରୁ ନୁହେଁ । ତା' ଉପରେ ଆପଣ କୃପା କରନ୍ତୁ ।"

ବଳୀଙ୍କ ପତ୍ନୀ ବିନ୍ଧ୍ୟାବଳୀ କୃତାଞ୍ଜଳୀ ପୁଟରେ ବିଷ୍ଣୁଙ୍କୁ ନିବେଦନ କରି କହିଲେ, "ହେ ଭଗବାନ, ମୋ ସ୍ୱାମୀଙ୍କର କୌଣସି ଭାବରେ ଯେପରି ଅମଙ୍ଗଳ ନ ହେଉ । ଏତିକି ଆପଣ ମୋ ସ୍ୱାମୀଙ୍କ ଉପରେ ଅନୁଗ୍ରହ କରନ୍ତୁ ।"

ବାମନ କହିଲେ, "ହେ କଲ୍ୟାଣମୟୀ, ତୁମ ସ୍ୱାମୀଙ୍କର ଅମଙ୍ଗଳ କରିବାର ଶକ୍ତି ଏ ସସାଗରା ପୃଥିବୀରେ ବା ସ୍ୱର୍ଗରେ କାହାର ନାହିଁ । ସେଥିପାଇଁ ତ ମୁଁ ଭିକାରୀ ହୋଇ ତାଙ୍କଠାରୁ ଦାନ ଗ୍ରହଣ କଲି । ତାଙ୍କର ଧର୍ମବଳ ଅସୀମ ।" ପୁଣି ପ୍ରହ୍ଲାଦଙ୍କୁ ଚାହିଁ ସେ କହିଲେ, "ବଳୀ ମୋର ଅତ୍ୟନ୍ତ ପ୍ରିୟ ମୁଁ ତାଙ୍କର ସବୁ ଦିଗରୁହିଁ ମଙ୍ଗଳ କରିବି ।"

ଏକଥା କହି ସେ ତାଙ୍କର ସମ୍ପୂର୍ଣ୍ଣ କଳା ନେଇ ବିଷ୍ଣୁ ରୂପ ଧାରଣ କଲେ ।

ଭଗବାନ୍ କହିଲେ, "ହେ ବଳୀ, ଦାନ ଓ ଧର୍ମରେ ତୁମର ସମକକ୍ଷ କେହି ନାହିଁ ଓ କେହି ହୋଇପାରିବ ନାହିଁ ମଧ୍ୟ । ଆଦର୍ଶ ଶାସନ କରୁଥିବା ଚକ୍ରବର୍ତ୍ତୀମାନଙ୍କ ମଧ୍ୟରେ ତୁମେହିଁ ଅଗ୍ରଗଣ୍ୟ, ଶ୍ରେଷ୍ଠ ଚକ୍ରବର୍ତ୍ତୀ । ମୁଁ ତୁମକୁ ପାତାଳକୁ ପଠାଇ ଦେଉଛି । ପାତାଳପୁରୀର ଅଧିପତି ହୋଇ ସେଠାରେ ଶାନ୍ତି ଓ ସୁଖରେ କାଳଯାପନ କର । ତୁମର ସମଗ୍ର ପରିବାର ସେଇଠାରେ ରହିବେ । ଆଜିଠାରୁ ମୋର ଆଶିର୍ବାଦରେ ତୁମେ ଚିରଜୀବୀ ହୋଇ ରହିଲ । ମୁଁ ଏଇ ଅବତାରରେ ଯେପରି ଦଣ୍ଡଧାରଣ କରିଥିଲି ସେହିପରି ଦଣ୍ଡଧାରଣ କରି ତୁମର ଦ୍ୱାରପାଳ ହୋଇ ତୁମକୁ ଜଗି ରହିଥିବି ଓ ତୁମକୁ ସର୍ବଦା ରକ୍ଷା କରୁଥିବି ।" ଏକଥା କହି ବାମନାବତାର ତ୍ରିବିକ୍ରମ ବିଷ୍ଣୁ ଅନ୍ତର୍ଦ୍ଧାନ ହୋଇଗଲେ ।





# ସନ୍ଦେହ ମୋଚନ

ଜଣେ ରାଜା ଥିଲେ । ତାଙ୍କ ମନକୁ ତିନୋଟି ପ୍ରଶ୍ନ ଆସିଲା : କାହା ପରାମର୍ଶରେ କାମ କରିବା ଉଚିତ ? ଶୁଭ କାର୍ଯ୍ୟ କେତେବେଳେ ଆରମ୍ଭ କରିବା ଆବଶ୍ୟକ ? ପ୍ରକୃତ ଧର୍ମ କଣ ?

ରାଜା ଘୋଷଣା କଲେ କି ଯିଏ ଏସବୁ ପ୍ରଶ୍ନର ସନ୍ତୋଷଜନକ ଉତ୍ତର ଦେଇପାରିବ, ସିଏ ଉପଯୁକ୍ତ ପୁରସ୍କାର ପାଇବ ।

ରାଜାଙ୍କ ସନ୍ଦେହ ମୋଚନ କରିବା ନିମନ୍ତେ ଅନେକ ପଣ୍ଡିତ ଚାଲି ଆସିଲେ । ପ୍ରଥମ ପ୍ରଶ୍ନର ଉତ୍ତରରେ ଅନେକ କହିଲେ, "ମହାରାଜ, ଆପଣ ଯଦି ମୋ ପରାମର୍ଶରେ କାମ କରିବେ-ତେବେ ଭଲ ହେବ ।" ଆଉ କେହି ଦେଶ ବିଦେଶର ବିଶିଷ୍ଟ ଜ୍ଞାନୀ ଗୁଣୀଙ୍କ ନାମ କହିଲେ ।

ଦ୍ୱିତୀୟ ପ୍ରଶ୍ନର ଉତ୍ତରରେ ଅଧିକାଂଶ ପଣ୍ଡିତ ପାଞ୍ଜି ଦେଖିବାର ପରାମର୍ଶ ଦେଲେ । କେତେଜଣ କହିଲେ, "ପ୍ରତ୍ୟେକ କାର୍ଯ୍ୟ ସକାଶେ ଭିନ୍ନ ପ୍ରକାର ଗଣନା ଆବଶ୍ୟକ । ମୁଁ ସେ କାମ କରିପାରେ ।"

ତୃତୀୟ ପ୍ରଶ୍ନର ଉତ୍ତରରେ ଯିଏ ଯେଉଁ ଧର୍ମମତରେ ବିଶ୍ୱାସ କରେ, ରାଜା ସେହି ଧର୍ମମତ ଅନୁସାରେ କାମ କରିବା ଉଚିତ ବୋଲି ପରାମର୍ଶ ଦିଆଗଲା ।

ରାଜା କାହାରି ଉତ୍ତରରେ ସନ୍ତୁଷ୍ଟ ହେଲେ ନାହିଁ । ରାଜଧାନୀ ବାହାରେ ଗୋଟାଏ ବଣ ଭିତରେ ଜଣେ ସାଧୁ ରହୁଥିଲେ । ରାଜା ତାଙ୍କ ବିଷୟରେ ଅନେକ ଦିନ ଧରି ଅନେକ କଥା ଶୁଣିଥିଲେ । ସେ ସାଧୁ ନିଜ ଆଶ୍ରମ ବାହାରକୁ କେବେ ଯାଉ

ରୁଷ ଦେଶର ଗଳ୍ପ



ନଥିଲେ । ପୁଣି କେହି ଲୋକ ଆଡ଼ମ୍ବର ଦେଖାଇ ତାଙ୍କ ପାଖକୁ ଆସିବାକୁ ବି ସେ ପସନ୍ଦ କରୁ ନଥିଲେ ।

ରାଜା ଜଣେ ସାଧାରଣ ଲୋକର ପୋଷାକ ପିନ୍ଧି କେତେଜଣ ବିଶ୍ୱସ୍ତ ଦେହ-ରକ୍ଷୀଙ୍କୁ ଧରି ବଣ ଭିତରେ ପହଞ୍ଚିଲେ । ଦେହରକ୍ଷୀଙ୍କୁ ଆଶ୍ରମ ଆଗରେ ଛାଡ଼ି କହିଲେ ସେମାନେ ଯେପରି କୌଣସି ମତେ ଆଶ୍ରମ ଭିତରେ ପଶିବେ ନାହିଁ ।

ରାଜା ଭିତରକୁ ଯାଇ ଦେଖିଲେ ସାଧୁ ମାଟି ଖାଡ଼ୁଛନ୍ତି । ରାଜା ତାଙ୍କୁ ଅଭିବାଦନ କରି କହିଲେ, "ମହାଭାଗ ! ମୋର ତିନୋଟି ପ୍ରଶ୍ନ ଅଛି । ଉପଯୁକ୍ତ ପରାମର୍ଶଦାତା କିଏ ? କାମ ଆରମ୍ଭ କରିବାର ଶୁଭ ମୁହୂର୍ତ୍ତ କିପରି ନିରୂପଣ କରିହେବ ? ଶ୍ରେଷ୍ଠ ଧର୍ମ କଣ ?"

ସାଧୁ କିଛି ନ କହି ମାଟି ଖାଡ଼ି ଚାଲିଲେ । ରାଜା ତାଙ୍କ ହାତରୁ ଶାବଳଟି ନେଇ ନିଜେ ମାଟି ହାଣିଲେ ଓ ଘଣ୍ଟାଏ ପରେ ପୁଣି ପ୍ରଶ୍ନଗୁଡ଼ିକ ଉତ୍ଥାପନ କଲେ । ତଥାପି ସାଧୁ କିଛି ନ କହିବାରୁ ରାଜା ମାଟି ହାଣି ଚାଲିଲେ ।

ସନ୍ଧ୍ୟା ହୋଇ ଆସିଲା । କାମ ବି ଶେଷ ହେଲା । ରାଜା ବସିପଡ଼ି କହିଲେ, "ମହା-ଭାଗ ! ଏଥର ମୋ ପ୍ରଶ୍ନର ଉତ୍ତର ମିଳୁ !"

ସାଧୁ ହଠାତ୍ ଅନ୍ୟ ଦିଗକୁ ଅନାଇ କହିଲେ, "କିଏ ଜଣେ ଆସୁଛି !"

ରାଜା ଚାହିଁ ଦେଖିଲେ, ଜଣେ ଲୋକ ଯନ୍ତ୍ରଣାରେ ମୁହଁ ବିକୃତ କରି ଦୌଡ଼ି ଆସୁଛି । ସେ ରାଜା ଓ ସାଧୁଙ୍କ ପାଖକୁ ଆସି ତଳେ ପଡ଼ିଗଲା । ରାଜା ଦେଖିଲେ, ତା ପେଟରେ ଗୋଟାଏ ସଦ୍ୟ କ୍ଷତ; ରାଜା ସଙ୍ଗେ ସଙ୍ଗେ କ୍ଷତ ଧୋଇ ଦେଇ ଗୋଟାଏ ଔଷଧ ଗଛର ପତ୍ର ଛେଚି କ୍ଷତରେ ଲଗାଇ ଦେଲେ ଓ ପଟି ବାନ୍ଧି ଦେଲେ । ତା'ପରେ ଲୋକଟି

ଉପରେ ପାଣି ସିଞ୍ଚି ତା'ଚେତା ଫେରାଇଲେ ଓ ପାଣି ପିଇବାକୁ ଦେଲେ । କିଛି ସମୟ ପରେ ତାକୁ ଧରି ଧରି ଗୋଟାଏ କୁଡ଼ିଆ ଭିତରକୁ ନେଇଯାଇ ଶୁଆଇଦେଲେ ।



ରାତିଟି ରାଜା ସାଧୁଙ୍କ ଆଶ୍ରମରେ କଟାଇଲେ । ସକାଳେ ଲୋକଟିର ଅବସ୍ଥା ଦେଖିବା ନିମନ୍ତେ ସେ ପାଖ କୁଡ଼ିଆ ଭିତରେ ପଶିଯିବା ମାତ୍ରେ ଲୋକଟି ରାଜାଙ୍କ ପାଦତଳେ ଲୋଟିଯାଇ କହିଲା, "ମହାରାଜ, ମୋତେ କ୍ଷମା କରନ୍ତୁ ।"

ରାଜା ଚମକି ପଡ଼ିଲେ । କାରଣ ସେ ସାଧାରଣ ପୋଷାକରେ ଥିବା ଯୋଗୁ ତାଙ୍କୁ କେହି ଚିହ୍ନିବା କଥା ନୁହେଁ ।

"ତମେ କିଏ ?" ରାଜା ପଚାରିଲେ ।

"ମୁଁ ଦୁର୍ଜୟ ସିଂହ !"

ଲୋକଟିର ଉତ୍ତର ଶୁଣି ରାଜା ପୁଣି ଚମକି ଉଠିଲେ । ଦୁର୍ଜୟ ସିଂହର ପିତା ରାଜାଙ୍କ ବାପାଙ୍କର ଶତ୍ରୁ ଥିଲା ଓ ପୂର୍ବ ରାଜାଙ୍କ ହାତରେ ମରିଥିଲା । ଦୁର୍ଜୟ ସିଂହ ବି ରାଜାଙ୍କ ପରମ ଶତ୍ରୁ । ସେ ଲୁଚି ଲୁଚି ରହି ଅନେକ ଦିନରୁ ରାଜାଙ୍କୁ ମାରିବାକୁ ଚେଷ୍ଟା କରୁଥିଲା । ରାଜା ଛଦ୍ମ ବେଶରେ ଆଶ୍ରମ ଆସିଛନ୍ତି ଜାଣି ସେ ଗୋଟାଏ ବୁଦା ମୂଳରେ ଲୁଚି ରହି ରାଜାଙ୍କ ଆଡ଼କୁ ତୀର ଯୋଖୁଥିଲା । କିନ୍ତୁ ସେଠି ଲୁଚି ରହିଥିବା ରାଜାଙ୍କର ଜଣେ ଗୁପ୍ତଚର ତା'ର ଉଦ୍ଦେଶ୍ୟ ବୁଝିପାରି ତା'କୁ ଲକ୍ଷ୍ୟ କରି ତୀର ମାରିଲା । ରାଜାଙ୍କ ଦେହ-ରକ୍ଷୀମାନେ ମଧ୍ୟ ତାକୁ କାବୁ କରିନେଇ ମାରି ପକାଇଥାନ୍ତେ । କିନ୍ତୁ ସେ ଧନୁ ତୀର ଛାଡ଼ି ଆଶ୍ରମ ଭିତରକୁ ପଳାଇ ଆସିଲା । ରାଜାଙ୍କ ନିଷେଧ ଥିବା ଯୋଗୁଁ ଦେହରକ୍ଷୀ ଓ ଗୁପ୍ତଚରମାନେ ଭିତରକୁ ଆସି ପାରିଲେ ନାହିଁ ।

"ମହାରାଜ ! ଆପଣ ଠିକ୍ ସମୟରେ

ଔଷଧ ଓ ପାଣି ଦେଇ ନଥିଲେ ମୁଁ ମରି-ଯାଇଥାନ୍ତି । ଏଣିକି ଆପଣ ଅନୁମତି ଦେଲେ ଆଜୀବନ ଆପଣଙ୍କ ସେବାରେ ରହିବି ।" ଦୁର୍ଜୟ ସିଂହ କହିଲା ।

"ଆଚ୍ଛା, ଆଚ୍ଛା, ଆଗେ ରାଜବୈଦ୍ୟ ତୁମର ଚିକିତ୍ସା କରି ତୁମକୁ ଭଲ କରନ୍ତୁ ।" ରାଜା କହିଲେ ।

ରାଜା ଏହାପରେ ଯାଇ ସାଧୁଙ୍କୁ ପ୍ରଣାମ କରି କହିଲେ, "ଆଜ୍ଞା, ଏଥର ଚାଲିଲି । ମୋ ପ୍ରଶ୍ନ ସବୁର ଉତ୍ତର କ'ଣ ତେବେ ମିଳିବ ନାହିଁ ?"

"ତୁମେ କ'ଣ ଏ ଯାଏ ସେସବୁ ଉତ୍ତର ପାଇ ନାହଁ ?" ସାଧୁ ପଚାରିଲେ । ରାଜା ବିସ୍ମିତ ହୋଇ ଅନାଇବାରୁ ସାଧୁ ପଚାରିଲେ "ଆଚ୍ଛା, ତୁମକୁ ମୋ ହାତରୁ ଶାବଳ ନେଇ ମାଟି ତାଡ଼ିବାକୁ ଓ ଦୁର୍ଜୟ ସିଂହର ଶୁଶ୍ରୂଷା କରିବାକୁ କିଏ ପରାମର୍ଶ ଦେଲା ?" ରାଜା ଉତ୍ତର ଦେଲେ, "ମୋ ବିବେକ ।" "ଅତଏବ ବିବେକହିଁ ଶ୍ରେଷ୍ଠ ପରାମର୍ଶଦାତା । ଆଚ୍ଛା, ତୁମେ ଯେତେବେଳେ ଶାବଳ ନେଇ କାମ ଆରମ୍ଭ କଲ ଓ ଯେତେବେଳେ ଲୋକଟିକୁ ଔଷଧ ଦେଲ, ସେତେବେଳେ ସେସବୁ ନକରି ପରେ କଲେ ଚଳିଥାନ୍ତା କି ?" ରାଜା କହିଲେ, "ନା ।" "ବେଶ୍, ଅତଏବ ବର୍ତ୍ତମାନ ହିଁ କାମ ଆରମ୍ଭର ଶ୍ରେଷ୍ଠ ସମୟ । ଆଚ୍ଛା, ଦୁର୍ଜୟ ସିଂହ ଭଳି ପ୍ରବଳ ଶତ୍ରୁକୁ କ'ଣ ମିତ୍ରରେ ପରିଣତ କଲା ?" ସାଧୁ ପଚାରିଲେ । "ମୋର ସେବା ଓ ସହାନୁଭୂତି ।" ରାଜା ଉତ୍ତର ଦେଲେ । "ଅତଏବ ସେବା ଓ ସହାନୁଭୂତିହିଁ ଶ୍ରେଷ୍ଠ ଧର୍ମ ।" ସାଧୁ ବୁଝାଇ ଦେଲେ ।

ରାଜା ସନ୍ତୁଷ୍ଟ ହୋଇ ଲେଉଟି ଗଲେ ।



# ଅସାଧାରଣ !

ଶମ୍ଭୂଦାସ ତାଙ୍କ ଅଞ୍ଚଳରେ ସବୁଠାରୁ ଭଲ ବୈଦ୍ୟ ହିସାବରେ ସୁନାମ ଅର୍ଜନ କରିଥିଲେ । ଦିନେ ଶୀତ ରାତି ଅଧରେ ଜମିଦାରଙ୍କ ଘର ଲୋକ ଆସି ତାଙ୍କୁ କହିଲା, "ଆଜ୍ଞା, ଜମିଦାରଙ୍କ ଶ୍ୱଶୁର ବୁଲି ଆସିଥିଲେ । ହଠାତ୍ ଅସୁସ୍ଥ ହୋଇ ପଡ଼ିଛନ୍ତି । ଚାଲନ୍ତୁ ।"

ଶମ୍ଭୂଦାସ ନିଜେ ସୁସ୍ଥ ବୋଧ କରୁ ନଥିଲେ । ପୁଣି ଭୀଷଣ ଶୀତ ପଡ଼ୁଥାଏ । ତଥାପି ସେ ବାହାରି ପଡ଼ିଲେ । କିନ୍ତୁ ଦାଣ୍ଡକୁ ଆସି ଦେଖିଲେ, ଜମିଦାର ଗାଡ଼ି ପଠାଇ ନାହାନ୍ତି ।

"ଆଜ୍ଞା, ତରତରରେ ଜମିଦାର ସାହେବ ସେ କଥା ଭୁଲିଯାଇଛନ୍ତି ।" ଡାକିବାକୁ ଆସିଥିବା ଲୋକ କହିଲା ।

ସେଇଠୁ ଶମ୍ଭୂଦାସ ଚାଲି ଚାଲି ଏକ ମାଇଲ ବାଟ ଗଲେ ଓ ଯାଇ ଦେଖିଲେ ଜମିଦାରଙ୍କ ଶ୍ୱଶୁରଙ୍କର ମୁଣ୍ଡ ବିନ୍ଧୁଥିଲା । ବୈଦ୍ୟ ପରୀକ୍ଷା କରି ଗମ୍ଭୀର ହୋଇ ରହିଲେ ।

"କ'ଣ ଆଜ୍ଞା, ଇଏ ସାଧାରଣ ନା ଅସାଧାରଣ କିଛି ?" ଜମିଦାର ପଚାରିଲେ ।

"ଅସାଧାରଣ ।" ବୈଦ୍ୟ କହିଲେ ।

ସଙ୍ଗେ ସଙ୍ଗେ ଜମିଦାର ଶାଶୁ ଓ ଶଳାମାନଙ୍କୁ ଡାକିବାକୁ ଲୋକ ପଠାଇଲେ ।

ବୈଦ୍ୟ ଜମିଦାରଙ୍କ ସବାରି ଭିତରେ ପଶି କହିଲେ, "ଏଥର ମୁଁ ଚାଲିଲି । ଔଷଧ ପୁଡ଼ିଆ ଆପଣଙ୍କ ଶ୍ୱଶୁରଙ୍କ ମୁଣ୍ଡ ପାଖରେ ଅଛି ।"

"ଆପଣ ପରା କହିଲେ ଏହା ଅସାଧାରଣ ଅବସ୍ଥା ? ଚାଲିଯାଉଛନ୍ତି କିପରି ?" ଜମିଦାର ଆଶ୍ଚର୍ଯ୍ୟ ହୋଇ ପଚାରିଲେ ।

"ଅସାଧାରଣ ହୋଇ ନଥିଲେ ଆପଣ ରାତି ଅଧରେ ମୋତେ ଡକାଇଥାନ୍ତେ ? ରୋଗ ସାଧାରଣ, କିନ୍ତୁ ରୋଗୀ ଅସାଧାରଣ !" ଏହା କହି ବୈଦ୍ୟ ଚାଲିଗଲେ ।



# ଫଟୋ-ପରିଚୟ-ପ୍ରତିଯୋଗିତା : ପୁରସ୍କାର ଟ.୫୦

ପୁରସ୍କୃତ ପରିଚୟୋକ୍ତି ଅକ୍ଟୋବର ୧୯୮୩ ସଂଖ୍ୟାରେ ପ୍ରକାଶ ପାଇବ ।







* ଉଭୟ ଚିତ୍ର ପାଇଁ ଉପଯୁକ୍ତ ପରିଚୟୋକ୍ତି ଦୁଇ ଗୃଶ ଧାଡ଼ିରେ ଲେଖା ହୋଇଥିବ ଏବଂ ପରସ୍ପର ସମ୍ବନ୍ଧିତ ହୋଇଥିବ ।
* ଅଗଷ୍ଟ ୧୦ ସୁଦ୍ଧା ପରିଚୟୋକ୍ତି ପହଞ୍ଚିବା ଆବଶ୍ୟକ ।
* ସର୍ବାଧିକ ଉପଯୁକ୍ତ ବିବେଚିତ ପରିଚୟୋକ୍ତି ପାଇଁ ୫୦.୦୦ ପୁରସ୍କାର ପଠାଯିବ ।
* ପରିଚୟୋକ୍ତି ସହ ପ୍ରେରକର ନାମ ଓ ଠିକଣା ପୋଷ୍ଟକାର୍ଡ଼ରେ ଲେଖା ହୋଇ (ସେଥିରେ ଅନ୍ୟ କଥା ରହିବା ଅନୁଚିତ) ଜହ୍ନମାମୁଁ ଫଟୋ ପରିଚୟ ପ୍ରତିଯୋଗିତା, ଚନ୍ଦାମାମା ବିଲ୍ଡିଙ୍ଗ୍ସ, ମାଡ୍ରାସ-୬୦୦୦୨୬ ଠିକଣାରେ ଆସିବା ଆବଶ୍ୟକ ।

## ଜୁନ୍ ପ୍ରତିଯୋଗିତାର ଫଳ

ପ୍ରଥମ ଚିତ୍ର : ଭୋଗ କରିସାରେଁ ବଜାଇ ଘଣ୍ଟି

ଦ୍ୱିତୀୟ ଚିତ୍ର : କାନ୍ଦନା ତୁ, ଭୋଗ ଖାଇବା ବାଣ୍ଟି !

ପୁରସ୍କାର ବିଜୟୀ : ପ୍ରଦୀପ କୁମାର ମିଶ୍ର, ଗଡ଼ଦପୁର, ଭଦ୍ରକ ।

ବିଜୟୀଙ୍କୁ ଅଭିନନ୍ଦନ; ସମସ୍ତ ପ୍ରତିଯୋଗୀଙ୍କୁ ଧନ୍ୟବାଦ ।

Printed by B. V. REDDI at Prasad Process Private Ltd., and Published by B. VISWANATHA REDDI for CHANDAMAMA CHILDREN'S TRUST FUND (Prop. of Chandamama Publications) 188. Arcot Road, Madras-600 026 (India). Controlling Editor: NAGI REDDI.

ଧୁମାଧୁମ ବଲ ଖେଳର ଧୁମ
ଆଜି ଛୁଟିର ଦିନ
ଖାଇବା ପାଇଁ ଜେମ୍ସ ମଜାଦାର
ଆମ ମନ ଛନଛନ !








**ଜେମ୍ସ ସବୁରି ପ୍ରିୟ–**
**ତା ପାଇଁ ଅଛି ସମୟ ହିଁ ସମୟ !**

କ୍ୟାଡବରିଜ
ଚକୋଲେଟ୍ସ

**କ୍ୟାଡବରିଜ ଜେମ୍ସ ଏତେ ବଢ଼ିଆ, ମିଠା ମିଠା ସପନ ଭଳିଆ !**

**Results of Chandamama—Camlin Colouring Contest No. 30 (Oriya)**
*1st Prize:* Jaya Kumar Maharana, Rourkela. *2nd Prize:* Sriharsa Swain, Cuttack. ... Dey, Balasore. S. Chandrasekhar, Bhubaneswar-4. *3rd Prize:* Susmita Maaha...


କେତେ ଟି ପେଣ୍ଟିଙ୍ଗ
କର ନା କାହିଁକି, ଅବିକଳ ମୋ ପ୍ରତିକୃତି
ଆଦୌ ଆଙ୍କିପାରିବ ନାହିଁ।
ତେବେ ଚେଷ୍ଟା କରିପାଅ।


GOLD SPOT
ମୋର ମନେ ହୁଏ
ତମ ମୁହଁଟାକୁ ମାଖିଦେଲେ
କଳା ସୃଷ୍ଟି
ହୋଇଥିବ।


ବିଜେତାଙ୍କ
ସମ୍ମାନରେ ଭାଲୁକଭଳି
ଗାଢ଼ ଆଲିଙ୍ଗନ।
ଆମେ ସମସ୍ତେ
ଗୋଲ୍ଡସ୍ପଟିଙ୍ଗର
ମଜାରେ ବିଭୋର।
ହୁରେ!
Goldspo